# ଶ୍ରୀ ସିଂହାଚଳ କ୍ଷେତ୍ର ମାହାତ୍ମ୍ୟ

# Sri Simhachala Kshetra Mahima



ଶ୍ରୀ ଶ୍ରୀ ଶ୍ରୀ ସିଂହାଚଳ ବରାହଲକ୍ଷ୍ମୀ ନରସିଂହସ୍ୱାମୀ
(ଚନ୍ଦନଚର୍ଚ୍ଚିତ)

Rate :

*Published by*

**SIMHACHALAM DEVASTHANAM**

# ଉ ପ କ୍ର ମ ଣି କା

ଶ୍ରୀ ସିଂହାଚଳ କ୍ଷେତ୍ର ମାହାତ୍ମ୍ୟ ନାମରେ ଅନେକ କବି ସ୍ୱ-କପୋଳ-କଳ୍ପିତ ବାକ୍ୟରେ ନାନା ପ୍ରକାର କଳ୍ପନା ଜଳ୍ପନା କରି ନିଜ ନିଜ ମତ-ଅନୁଯାୟୀ ସିଂହାଦ୍ରି ଅପନା ପ୍ରଭୃତି ନାମ ଦେଇ ଆନ୍ଧ୍ର ଭାଷାରେ ପ୍ରଚୁର କରୁ-ଅଛନ୍ତି । ଏହି ଆନ୍ଧ୍ର ମାହାତ୍ମ୍ୟ ସଂସ୍କୃତ କ୍ଷେତ୍ର ମାହାତ୍ମ୍ୟର ଯେ କେବଳ ବିରୋଧୀ ତାହା ନୁହେଁ, ପ୍ରକାରାନ୍ତରରେ କ୍ଷେତ୍ରର ଅତିଶୟ ଶ୍ରୀ ସ୍ୱାମୀଙ୍କର ମହିମା ପ୍ରଭୃତି ବିଷୟରେ ବିଭ୍ରାନ୍ତି ସୃଷ୍ଟି କରି ପାଠକମାନଙ୍କର ହୃଦୟରେ ନାନାପ୍ରକାର ସଂଶୟ ଜାତ କରାଉ ଅଛି । ଏହି ଅସଂଗତ ପ୍ରଚୁରର ପ୍ରତିରୋଧ କରି, ପାଠକମାନଙ୍କର ସଂଶୟ ଦୂର କରି ଭକ୍ତି ଉଦ୍ରେକ କରିବା ସକାଶେ ମୂଳ ସଂସ୍କୃତରୁ ଅବିକଳ ଆନ୍ଧ୍ର ଅନୁବାଦ କରିବା ସକାଶେ ଶ୍ରୀ ଶ୍ରୀ ଶ୍ରୀ ବିଜୟନଗରର ସଂସ୍ଥାନର ଅଧିକାର ଶ୍ରୀ ପି. ରାମଚନ୍ଦ୍ର ରାଓ ପାନ୍ତୁଲୁ B. A. ମହାଶୟଙ୍କର ଇଚ୍ଛିତ ଅନୁଯାୟୀ ଶ୍ରୀ ସିଂହାଚଳ ଦେବସ୍ଥାନ ଏକ୍‌ଜକ୍ୟୁଟିଭ୍ ଅଫିସର ଶ୍ରୀ ଗର୍ତ୍ତି ବିଶ୍ୱନାଥ ପାନ୍ତୁଲୁ B. A ଙ୍କ ଆଦେଶ ପାଇଁ ମୁଁ ଭକ୍ତମାନଙ୍କର ସୁଖବୋଧ ହେଲାପରି ଆନ୍ଧ୍ରରେ ଅନୁବାଦ କରିଅଛି । କବିତା ବା ଲେଖାଲେଖିରେ ମୋର ଅନୁଭବ ନଥିବାରୁ ଏବଂ ଅତି ଅଳ୍ପ ସମୟରେ ଲେଖିଥିବାରୁ ତଦ୍ୟ ଲେଖାରେ କେତେକ ପ୍ରମାଦ ରହିବା ଅବଶ୍ୟମ୍ଭାବୀ । ଭଗବାନଙ୍କର ଚରିତ୍ର ବା ସ୍ତୋତ୍ର ଲେଖିଲାବେଳେ ଦୋଷାଦୋଷ ଧର୍ତ୍ତବ୍ୟ ନୁହେଁ ବୋଲି ପଣ୍ଡିତମାନେ କହନ୍ତି । ଏହି ଅନୁବାଦରେ ଯଦି କିଛି ଦୋଷ ଥାଏ, ତେବେ ତାହା ପରିହାର କରି ଗୁଣମାତ୍ର ଗ୍ରହଣ କରି ମୋତେ ଚରିତାର୍ଥ କରିବେ ବୋଲି ମୁଁ ସୁଧୀପାଠକବର୍ଗଙ୍କୁ ପ୍ରାର୍ଥନା କରୁଅଛି । ବିଜୟନଗରର ମହାରାଜ ସଂସ୍କୃତ କଲେଜର ପ୍ରିନ୍‌ସପାଲ ଶ୍ରୀମାନ୍ ତିରୁମଲ ନରସିଂହାଚାର୍ଯ୍ୟ ମହୋଦୟ ଏହି ଗ୍ରନ୍ଥ ସମ୍ପୂର୍ଣ୍ଣ ରୂପେ ପରିଶୀଳନ ଓ ସଂଶୋଧନ କରି ମୋତେ ଆପ୍ୟାୟିତ କରିଅଛନ୍ତି । ତାଙ୍କୁ ମୋର କୃତଜ୍ଞତା ନିବେଦନ ସହିତ ପ୍ରଣାମ ଜଣାଉଛି ।

ସିଂହାଚଳ ଦେବସ୍ଥାନ,
୪-୧୦-୧୯୫୨

ବିନୀତ
ଶ୍ରୀମାନ୍ କେ. ଆପ୍‌ପଲାଚାରୀ
ପାଞ୍ଚରାତ୍ରଆଗମ ପଣ୍ଡିତ



# ମୁଖବନ୍ଧ

ଭଗବାନ୍ ପରମ କାରୁଣିକ । ସେ ପୁତ୍ରସ୍ଥାନୀୟ ସମସ୍ତ ପ୍ରାଣୀଙ୍କୁ ଉଦ୍ଧାର କରିବା ସକାଶେ ସଦା ବଦ୍ଧପରିକର ବୋଲି ସମସ୍ତ ଶାସ୍ତ୍ର ଘୋଷଣା କରନ୍ତି । କଳିକାଳର ପ୍ରଭାବରେ ଲୋକମାନେ ସଂସାରସଂଲିପ୍ତ ହୋଇ ଭଗବାନଙ୍କଠାରେ ଶ୍ରଦ୍ଧା ଓ ଭକ୍ତି ନ ରଖି ପଥଭ୍ରଷ୍ଟ ହେବା ପ୍ରତ୍ୟକ୍ଷ କରି ଜନମାନଙ୍କର ଉଦ୍ଧାର ସକାଶେ ପ୍ରେମମୟ ଭଗବାନ୍ ଶ୍ରୀ ସିଂହାଚଳ ପ୍ରଭୃତି ପୁଣ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଆଶ୍ରିତ ବାତ୍ସଲ୍ୟ ପ୍ରକାଶ କରିଥାନ୍ତି ।

ଅନେକ ଲୋକ ସେହି ସେହି କ୍ଷେତ୍ରମାନଙ୍କରେ ମହିମା ନ ଜାଣିପାରି ଭବବନ୍ଧ ହୋଇଥାନ୍ତି ଭାବି ନାରାୟଣଙ୍କର ଅବତାର ଭଗବାନ୍ ବେଦବ୍ୟାସ ଅଷ୍ଟାଦଶ ପୁରାଣ ରଚନା କରି ସ୍କନ୍ଦ ପୁରାଣରେ ଶ୍ରୀ ସିଂହାଚଳ କ୍ଷେତ୍ରର ମାହାତ୍ମ୍ୟ ଭଲରୂପେ ବହୁଳଭାବେ ପ୍ରକାଶ କରି ଅଛନ୍ତି ।

ସଂସ୍କୃତ ଭାଷାରେ ଲିଖିତ ସ୍କନ୍ଦ ପୁରାଣ ପଢ଼ିବାର ସୁବିଧା ପ୍ରାପ୍ତ ଅନେକ ଲୋକଙ୍କ ଭାଗ୍ୟରେ ଘଟେନାହିଁ । ସୁତରାଂ ଦୟାମୟ ସିଂହାଚଳାଧୀଶ ନରସିଂହ ସ୍ୱାମୀଙ୍କର ମହିମା ଜାଣିବା ସୁଲଭ ହୋଇ ପାରୁ ନାହିଁ । ଅତଏବ ସ୍କନ୍ଦପୁରାଣର ସିଂହାଚଳ କ୍ଷେତ୍ର ମାହାତ୍ମ୍ୟ ଭାରି ଅପାମର ବୋଧଗମ୍ୟ ହେଲାପରି ବିବିଧ ଦେଶ ଭାଷାରେ ଅନୁଦିତ ହେବା ବାଞ୍ଛନୀୟ । ଭାରତବାସୀ କଲ୍ୟାଣମାର୍ଗରୁ ନିଜେ ତରିବା ଅପେକ୍ଷା ଅନ୍ୟମାନଙ୍କୁ ତାରିବା କର୍ତ୍ତବ୍ୟ ବୋଲି ମନେ କରିଥାଏ । ଏ ବିଷୟରେ ଆମର ମହାପୁରୁଷମାନଙ୍କର ଜୀବନ ଚରିତ ନିଦର୍ଶନ । ଅତଏବ ଭକ୍ତମାନେ ନିଜର ମୁକ୍ତି ଅପେକ୍ଷା ଅନ୍ୟର ମୁକ୍ତି ସମ୍ପାଦନ ସମୁଚିତ ବୋଲି ମନେ କରନ୍ତି । ଏହି ଭାବରେ ଅନୁପ୍ରାଣିତ ହୋଇ ଅରବିନ୍ଦ ପ୍ରଭୃତି ତ୍ୟାଗଶୀଳମାନେ ପ୍ରଜାମାନଙ୍କର ମଙ୍ଗଳ ସକାଶେ ନିଜ ନିଜ ଜୀବନ ଉତ୍ସର୍ଗ କରି ଅଛନ୍ତି । ସମଗ୍ରବେଦ ଶାସ୍ତ୍ର, କଳା ପ୍ରଭୃତି ଏହି ଭାବ ଲକ୍ଷ୍ୟ ରଖି ପ୍ରସିଦ୍ଧି ଲାଭ କରିଅଛନ୍ତି ।

ଏପରି ପରିସ୍ଥିତିରେ ଲୋକମାନେ ସିଂହାଚଳାଧୀଶ୍ୱର ସିଂହସ୍ୱାମୀଙ୍କର ପ୍ରଭାବ ପୂର୍ଣ୍ଣଭାବେ ଜାଣି ଭକ୍ତିପରବଶ ହୋଇ ମୁକ୍ତ ହେବା ସକାଶେ ଏହି କ୍ଷେତ୍ରର ମାହାତ୍ମ୍ୟ ବିବିଧ ଦେଶ ଭାଷାରେ ଅନୁଦିତ ହେବା ବାଞ୍ଛନୀୟ ବୋଲି କହିବା ବାହୁଲ୍ୟ ମାତ୍ର ।

ଶ୍ରୀ ନନ୍ଦୁରୁ ବେଙ୍କଟ ଅପ୍ପଲସ୍ୱାମୀଙ୍କ ଦ୍ୱାରା ଆନ୍ଧ୍ର ଭାଷାରେ ଅନୁଦିତ କ୍ଷେତ୍ର ମାହାତ୍ମ୍ୟ ଏକ ଉପାଦେୟ ଗ୍ରନ୍ଥ । ଗ୍ରନ୍ଥଟି ସକଳ ଶ୍ରେଣୀର ଲୋକମାନଙ୍କର

ସୁବୋଧ ହେବା ଉଦ୍ଦେଶ୍ୟରେ ଆଚାର୍ଯ୍ୟ ମହୋଦୟ ମୃଦୁ ଭାଷା ପ୍ରୟୋଗ କରି ଅଛନ୍ତି । ମୁଁ ଏହି ଗ୍ରନ୍ଥ ମୂଳ ଗ୍ରନ୍ଥର ଭାବ ମାତ୍ର ଗ୍ରହଣକରି ଦେଖିଛି । ଅନୁବାଦକ ଆକ୍ଷରିକ ଅନୁବାଦ ନକରି ମୂଳ ଗ୍ରନ୍ଥର ଭାବ ମାତ୍ର ଗ୍ରହଣ କରି ତାର ବିକାଶ ସାଧନ କରିଅଛନ୍ତି । ଆଧୁନିକ ଯୁଗରେ ଏହି ଧରଣର ଅନୁବାଦ ସ୍ପୃହଣୀୟ । ଏହିପରି ନକରି ପ୍ରୌଢ଼ଶୈଳୀ, ବିବିଧ ଅଳଙ୍କାର ସମାବେଶ ଅର୍ଥଗାମ୍ଭୀର୍ଯ୍ୟ ଓ ଶବ୍ଦ କାଠିନ୍ୟ ପ୍ରକାଶ କରି ନିଜ ପାଣ୍ଡିତ୍ୟ ବିଜୃମ୍ଭଣ କଲେ ଗ୍ରନ୍ଥ ସର୍ବଜନ-ବୋଧ ନ ହୋଇ ନିରର୍ଥକ ହୋଇଥାଏ । ଏହିପରି ନିଜର ପାଣ୍ଡିତ୍ୟ ବିଜୃମ୍ଭଣ ନ କରି ମୂଳ ଗ୍ରନ୍ଥର ଉଦ୍ଦେଶ୍ୟ ଅକ୍ଷୁର୍ଣ୍ଣ ରଖି ବିଷୟ ଗୁଡ଼ିକ ସରଳ ଭାବରେ ମୃଦୁବାକ୍ୟରେ ପ୍ରକାଶ କରି ସିଂହାଚଳାଧୀଶ ନରସିଂହ ସ୍ୱାମୀଙ୍କର ମହିମାକୁ ସକଳଶାସ୍ତ୍ରଶିରୋରତ୍ନଲୋକମାନଂକରସମ୍ମୁଖରେଉପସ୍ଥାପନ କରି ଗ୍ରନ୍ଥକର୍ତ୍ତା ଆନ୍ଧ୍ର ସାହିତ୍ୟକମାନଙ୍କର ପ୍ରଶଂସାର ପାତ୍ର ହୋଇଅଛନ୍ତି । ସମସ୍ତ ଆନ୍ଧ୍ର ସାହିତ୍ୟ ସେଥି ସକାଶେ ଗ୍ରନ୍ଥକର୍ତ୍ତାଙ୍କ ପାଖରେ କୃତଜ୍ଞ ।

ଏହି ଗ୍ରନ୍ଥ ପ୍ରକାଶ କରି ସଂସ୍ଥାନ କର୍ତ୍ତୃପକ୍ଷ ମଧ୍ୟ ଅତୀବ ଅଭିନନ୍ଦନର ପାତ୍ର ହୋଇଅଛନ୍ତି ।

ଏହା ପୂର୍ବରୁ ଶ୍ରୀ ବିଜୟନଗର ରାଜାଙ୍କ କର୍ତ୍ତୃକ ପରିଶୀଳିତ ଶ୍ରୀକୂର୍ମ-କ୍ଷେତ୍ରର ମାହାତ୍ମ୍ୟ ଆନ୍ଧ୍ର ତାତ୍ପର୍ଯ୍ୟ ସହିତ ପ୍ରକାଶିତ ହୋଇଅଛି । ତଦ୍ରୂପତ ଜଗନ୍ନାଥ ପ୍ରଭୃତି କ୍ଷେତ୍ରମାନଙ୍କର ମାହାତ୍ମ୍ୟ ମଧ୍ୟ ସେହି ସେହି ପ୍ରାନ୍ତୀୟ ଭାଷାମାନଙ୍କରେ ଓ ଅନ୍ୟାନ୍ୟ ଭାଷାରେ ମଧ୍ୟ ଗଦ୍ୟପଦ୍ୟାକାରରେ ପ୍ରକାଶିତ ହୋଇଅଛି ।

ଭାରତର ସୁପ୍ରସିଦ୍ଧ ପ୍ରଥମ ପୁଣ୍ୟକ୍ଷେତ୍ରର ମାହାତ୍ମ୍ୟକୁ ଆନ୍ଧ୍ରଭାଷାରେ ଅନୁବାଦ କରି ଶ୍ରୀ ଆଚାର୍ଯ୍ୟ ମହୋଦୟ ଏବଂ ତାହା ପ୍ରକାଶ କରି ଦେବସ୍ଥାନ କର୍ତ୍ତୃପକ୍ଷ ବିଶେଷ ପ୍ରଶଂସାର ପାତ୍ର ହୋଇଅଛନ୍ତି । ସେମାନଙ୍କୁ ଶ୍ରୀ ସିଂହାଚଳ-ନାଥ ଶ୍ରୀ ନରସିଂହ ସ୍ୱାମୀ ଦୀର୍ଘ ଆୟୁ, ଆରୋଗ୍ୟ ଓ ଐଶ୍ୱର୍ଯ୍ୟ ଦାନ କରି ଅନୁଗୃହୀତ କରନ୍ତୁ ।

ବିଜୟନଗର,
ଶ୍ରୀନନ୍ଦନ ସମ୍ବତ୍ସର,
ଆ: ଶୁ: ୨ଯା ।
୨୦-୯-୧୯୫୨

ଶ୍ରୀ ତିରୁମଲ ନରସିଂହାଚାରୀ
M.A.L.T.,
ପ୍ରିନ୍ସିପାଲ
ବିଜୟନଗର ସଂସ୍କୃତ କଲେଜ

# ଓଡ଼ିଆ ଅନୁବାଦ

ସିଂହାଚଳ ସ୍ୱାମୀଙ୍କ ଦର୍ଶନ ସକାଶେ ଓଡ଼ିଶାରୁ ଅସଂଖ୍ୟ ତୀର୍ଥଯାତ୍ରୀ ସିଂହାଚଳ ଯାଆନ୍ତି । ଓଡ଼ିଆମାନଙ୍କ ପକ୍ଷେ ତେଲୁଗୁ ବୁଝିବା କଠିନ ହୋଇଉଠେ । ଆକାର ଇଙ୍ଗିତ ପ୍ରଦର୍ଶନରେ ଯେ କୌଣସିମତେ ପ୍ରଭୁଙ୍କର ଦର୍ଶନ କରି ଫେରି ଆସନ୍ତି । ସିଂହାଚଳ କ୍ଷେତ୍ରର ମାହାତ୍ମ୍ୟ ଜାଣିବା କାଠିକର ପାଠ । ସିଂହାଚଳ କର୍ତ୍ତୃପକ୍ଷ ଏହି ଅଭାବ ଦୂର କରିବା ସକାଶେ ତେଲୁଗୁ ଭାଷାରେ ପ୍ରକାଶିତ ସିଂହାଚଳ କ୍ଷେତ୍ରର ମାହାତ୍ମ୍ୟ ଓଡ଼ିଆରେ ଅନୁବାଦ କରାଇ ପ୍ରକାଶ କରିବାକୁ ସ୍ଥିର କଲେ । ଏବଂ ଜଣେ ଉପଯୁକ୍ତ ଅନୁବାଦକ ସ୍ଥିର କରିବାକୁ ବରଂପୁରର ଏଡଭୋକେଟ ଶ୍ରୀ ଦାଚାରାମ ନରସିଂହ ରାଓଙ୍କ ପାଖକୁ ଲେଖିଲେ ।

ମୁଁ ସେମାନଙ୍କର ଅନୁରୋଧ ରକ୍ଷାକରି ଓଡ଼ିଆ ତରଜମା କରିଅଛି । ତେଲୁଗୁରୁ ଅନୁବାଦ ନ କରି ମୂଳଗ୍ରନ୍ଥର ଅନୁବାଦ ସରଳ ପଦ୍ୟରେ କରିଥିଲେ ଭଲ ହୋଇଥାଆନ୍ତା । ମାତ୍ର କର୍ତ୍ତୃପକ୍ଷଙ୍କ ଉଦ୍ଦେଶ୍ୟ ଚରିତାର୍ଥ ହୋଇପାରନ୍ତା ନାହିଁ । ଆନ୍ଧ୍ର ଭାଷାରେ ଶୈଳୀ ରକ୍ଷା କରି ଏହି ଅନୁବାଦ କରିଅଛି । ଫଳରେ ଭାଷା ଟିକଏ ବକ୍ତୃତ କଠିନ ହୋଇଅଛି । ମାତ୍ର ଆକ୍ଷରିକ ଅନୁବାଦ କରିବାରେ ତ୍ରୁଟି କରିନାହିଁ ।

Oriya edition of "Simhachala kshetra Mahima" was printed in 1952 by Sri Tirumala Narasimhachari M.A.B.L. Prinicipal. Vijayanagaram College. After a lapse of Thirty three years, in 1985. the Second edition of this book is published by Sri. N. Chitti Babu B.A., LLB Executive officer Simhachalam Devasthanam. He evinced very keen interest in publishing this edition.

ଶ୍ରୀଃ

# ଶ୍ରୀ ସିଂହାଚଳ କ୍ଷେତ୍ର ମାହାତ୍ମ୍ୟ

ଶ୍ରୀମାନ୍ ସର୍ବଭବର ଉଦ୍ଧାରକ, ସମସ୍ତ ଜନ୍ତୁର ହିତପ୍ରଦ, ସର୍ବଦା ସୁଖଦାୟୀ, ଭକ୍ତାଗ୍ରେସର ଜୈମିନି ଋଷିଙ୍କର ଆଶ୍ରମକୁ ଶୌନକାଦି ଋଷିମାନେ ଏକ ପୁଣ୍ୟ ଦିନରେ ଆସି ସାଷ୍ଟାଙ୍ଗ ପ୍ରଣାମ କରି ଋଷିଙ୍କର ଆଦେଶରେ ଉପ-ବେଶନ କଲେ ଏବଂ କୁଶଳବାର୍ତ୍ତା ବିନିମୟ କଲା ପରେ ନିଜ ଆଗମନର ଉଦ୍ଦେଶ୍ୟ ଜଣାଇଲେ । ଋଷିମାନେ କହିଲେ—"ଋଷିବର୍ଯ୍ୟ, ଆପଣଙ୍କର ଅନୁଗ୍ରହରୁ ଆମ୍ଭେମାନେ ଶ୍ରୀଜଗନ୍ନାଥଙ୍କର କ୍ଷେତ୍ରମାହାତ୍ମ୍ୟ, ପ୍ରସାଦମହିମା ଓ ଉତ୍ସବାଦି ଦର୍ଶନ ଫଳ ଶୁଣି କୃତାର୍ଥ ହୋଇଅଛୁଁ । ଏପରି ମୁକ୍ତିଦାୟକ ଅନ୍ୟ କ୍ଷେତ୍ର ନାହିଁ ବୋଲି ଆମ୍ଭମାନଙ୍କର ଧାରଣା । ବ୍ରହ୍ମା ଜଗତର ଅଧିନାୟକ ଶ୍ରୀ-ନୃସିଂହ ଦେବଙ୍କୁ ପୂର୍ବକାଳରେ ନୃସିଂହ ମନ୍ତ୍ରରାଜରେ ପୂଜା କରିଥିଲେ ବୋଲି ଆପଣ କହି ଅଛନ୍ତି । ସେହି ନୃସିଂହ ଦେବଙ୍କର କ୍ଷେତ୍ରମାହାତ୍ମ୍ୟ ଆପଣ ନିଜ ସର୍ବଜ୍ଞତା ବଳରେ ବିଶଦ ଭାବରେ କହି କୃତାର୍ଥ କରନ୍ତୁ । ପୂର୍ବରେ ଶ୍ରୀନୃସିଂହ-ସ୍ୱାମୀ କେଉଁ ମନ୍ତ୍ରରେ ପୂଜା ପାଉଥିଲେ ? ଆମ୍ଭେମାନେ ଶୁଣିଛୁ ଶ୍ରୀ ନୃସିଂହ-ସ୍ୱାମୀଙ୍କର ୩୨ ପ୍ରକାର ରୂପ ଅଛି । ସେ ସମସ୍ତ ରୂପ କିପରି ? ବର୍ତ୍ତମାନ ଭୂମଣ୍ଡଳରେ କେଉଁ କେଉଁ କ୍ଷେତ୍ରରେ ସେହି ସେହି ରୂପ ପୂଜା ପାଉ ଅଛନ୍ତି ? ଭୋଗ ବା ମୋକ୍ଷ ଅଭିଳାଷୀ ଭକ୍ତମାନେ କେଉଁ କେଉଁ କ୍ଷେତ୍ରରେ କି କି ରୂପର ଆରାଧନା କରୁ ଅଛନ୍ତି ? ଆପଣ ମହାଜ୍ଞାନୀ । ଆମ୍ଭେମାନେ ପଚାରିବା ପ୍ରଶ୍ନମାନଙ୍କର ଉତ୍ତର ଦେବାକୁ ସମର୍ଥ । ଆପଣ ଆମ୍ଭମାନଙ୍କର ଗୁରୁ । ଆମ୍ଭେମାନେ ଶ୍ରଦ୍ଧା ଓ ଭକ୍ତି ସହକାରେ ପ୍ରାର୍ଥନା କରୁଅଛୁ । ଆପଣ ଅନୁଗ୍ରହ କରି ସେ ସମସ୍ତ ରହସ୍ୟ ପ୍ରକାଶ କରନ୍ତୁ" । ଜୈମିନି ଉତ୍ତର କଲେ—"ଭୂଲୋକରେ ପର୍ବତରେ ଓ ବନରେ ଶ୍ରୀ ନୃସିଂହଦେବଙ୍କର ଭକ୍ତି ମୁକ୍ତି ପ୍ରଦ, ରମଣୀୟ ଓ ଗୁପ୍ତ ଅନେକ ସ୍ଥାନ ଅଛି । ସେମାନଙ୍କ ମଧ୍ୟରେ ଚାରୋଟି ସ୍ଥାନ ପ୍ରଧାନ—ଆହୋବଳ; ପାପହର କୃତଶୌଚ ଓ ସିଂହାଚଳ । ଏ ସମସ୍ତ କ୍ଷେତ୍ର ପ୍ରସିଦ୍ଧି ଲାଭ କରିଅଛି । ଆହୋବଳ କ୍ଷେତ୍ରରେ ଶ୍ରୀ ନୃସିଂହ ଦେବ ହିରଣ୍ୟ କଶିପୁ ନାମକ ରାକ୍ଷସକୁ ନଖ ଦ୍ୱାରା ବିଦୀର୍ଣ୍ଣ

କରିଥିଲେ । ଦେବତାମାନେ ସେ ସମୟରେ ତାଙ୍କର ଅସାଧାରଣ ବ୍ୟକ୍ତି ସାମର୍ଥ୍ୟ ଦେଖି ବିସ୍ମୟାଭିଭୂତ ହୋଇ "ଅହୋ ବଳମ୍" ( କି ଅଦ୍ଭୁତ ଶକ୍ତି ! ) ବୋଲି ହଠାତରେ କହିଥିଲେ । ଦେବତାମାନଙ୍କର ସେହି ଉଚ୍ଚାରଣ ଅନୁଯାୟୀ ସେ କ୍ଷେତ୍ରର ନାମ 'ଅହୋବଳ' ହୋଇଅଛି । 'ପାପହର' କ୍ଷେତ୍ରରେ ଶ୍ରୀ ନରସିଂହ-ସ୍ୱାମୀ ଉଗ୍ରରୂପ ଧାରଣ କରି 'ମାର୍ଜାର ନରସିଂହ' ନାମରେ ଭକ୍ତଜନମାନଙ୍କର କାଳ-ମୂଷକକୁ ଶାସନ କରିଥିଲେ । ସେହି ସ୍ୱାମୀଙ୍କର ଉଗ୍ରରୂପ ଦେଖିଲାମାତ୍ରେ ସମସ୍ତ ପାପ ନଷ୍ଟ ହୋଇଯାଏ । ଏ ହେତୁ ସେ କ୍ଷେତ୍ରକୁ 'ପାପହର' ବୋଲି ସାର୍ଥକ ନାମ ଦିଆଯାଇଅଛି । ମାତୃଚରହିଂସକ ହିରଣ୍ୟକଶିପୁକୁ ସଂହାର କଲାପରେ ଶ୍ରୀ ନରସିଂହ ସ୍ୱାମୀ ରାକ୍ଷସର ରକ୍ତ ମାଂସିରେ ଆପ୍ଲୁତ ନିଜ ନଖରକୁ ଯେଉଁ ତୀର୍ଥରେ ଧୌତ କରି ବିଶୁଦ୍ଧ ହୋଇ ଯୋଗିମାନଙ୍କ ସହିତ 'ଯୋଗାନନ୍ଦ ନରସିଂହ' ରୂପରେ ଅବସ୍ଥାନ କରନ୍ତି, ସେହି ତୀର୍ଥ 'କୃତଧୌତ' ନାମରେ ପ୍ରସିଦ୍ଧ । ଯେଉଁ ପର୍ବତରେ ନରସିଂହ ସ୍ୱାମୀ ଭକ୍ତମୁକ୍ତିପ୍ରଦ ସିଂହସ୍ୱରୂପେ ଅବତରି ବିରାଜମାନ ହୋଇ ଅଛନ୍ତି ସେହି ପର୍ବତରାଜ ସିଂହାଚଳ ନାମେ ବିଖ୍ୟାତ । ଯେଉଁ ସମୟରେ ହିରଣ୍ୟକଶିପୁ ପାଞ୍ଚ ବର୍ଷର ପୁଅ ପ୍ରହ୍ଲାଦକୁ ସମୁଦ୍ରରେ ଭସାଇ ଦେଲେ ଓ ପର୍ବତ ଉପରୁ ପକାଇ ଦେଲେ ସେ ସମୟରୁ ଭକ୍ତବନ୍ଧୁ ପ୍ରଶାନ୍ତମୂର୍ତ୍ତି ଭଗବାନ୍ ନାରାୟଣ ବୈକୁଣ୍ଠ ତ୍ୟାଗ କରି ଭକ୍ତର ରକ୍ଷା ସକାଶେ ପୃଥିବୀରେ ଅବତରଣ କଲେ । ଋଷିଗଣ, ପୁରୁଷୋତ୍ତମ କ୍ଷେତ୍ରରେ ଯେପରି ଜଗନ୍ନାଥ ପ୍ରତ୍ୟକ୍ଷ ଫଳ ଦାତା ରୂପେ ଅବସ୍ଥାନ କରନ୍ତି ସିଂହାଚଳରେ ସୁଦ୍ଧା ସେହିପରି ପ୍ରତ୍ୟକ୍ଷ ଫଳ ଦାତା ରୂପରେ ବିରାଜମାନ ହୋଇ ଅଛନ୍ତି । ଦେବଦେବ ନରସିଂହ ସ୍ୱାମୀଙ୍କର ଶରୀରକାନ୍ତି ମଲ୍ଲୀଫୁଲ ପ୍ରାୟ ସ୍ୱଚ୍ଛ ଓ ଧବଳ; ମୁଖ କଳାପରିପୂର୍ଣ୍ଣ ଚନ୍ଦ୍ରମଣ୍ଡଳ ପରି ଆହ୍ଲାଦକର, ହସ୍ତଦ୍ୱୟ ଆଜାନୁଲମ୍ବିତ, ବ୍ରହ୍ମରନ୍ଧ୍ରଗତ ନେତ୍ର ସହିତ ତିନୋଟି ନେତ୍ର, ଦିବ୍ୟ ଶରୀର ଶାନ୍ତ ଲକ୍ଷଣ ଓ ତ୍ରିଭଙ୍ଗି ବିଶିଷ୍ଟ, ଶ୍ରୀପାଦପଦ୍ମ-ଯୁଗଳ ଭୂମି ଉପରେ ବିନ୍ୟସ୍ତ—ଏହିପରି ସର୍ବୋତ୍କୃଷ୍ଟ ରୂପେ ସିଂହାଚଳରେ ବିରାଜମାନ ହୋଇ ଅଛନ୍ତି । ଋଷିଗଣ, ଦେବଦେବ ଶ୍ରୀ ନରସିଂହ ସ୍ୱାମୀ ଏକ ହସ୍ତରେ ସନ୍ତୁଷ୍ଟ ଗରୁଡକୁ ଅମୃତ ପିଆଉ ଅଛନ୍ତି, ଅପର ହସ୍ତରେ ଖସି ପଡୁଥିବା ପୀତାମ୍ବର ଉଠାଉଛନ୍ତି । ଭୁଜ ଉପରେ କେଶର ଜାଲ ଭେଳ ଶୋଭା ପାଉଛି ଏବଂ ସେହି କେଶର ଗୁଡ଼ିକ ହେତୁ କର୍ଣ୍ଣ ଯୁଗଳ ଅପୂର୍ବ ଶୋଭା ଧାରଣ କରୁଅଛି । ଏହିପରି ସର୍ବାତିଶାୟୀ ଅପୂର୍ବ ରୂପରେ ଭଗବାନ୍ ବିଜେ କରି ଅଛନ୍ତି ।

ଋଷିମାନେ କହିଲେ—ଆପଣ କହିଥିବା ଏହି କେତେଟି କ୍ଷେତ୍ର ମଧ୍ୟରେ କେଉଁଟି ଅତ୍ୟନ୍ତ ଶ୍ରେଷ୍ଠ ? କେଉଁ କ୍ଷେତ୍ରରେ ବାସ କଲେ ମାତ୍ରେ ମନୁଷ୍ୟ ନରକରୁ ମୁକ୍ତ ଲାଭ କରେ ? ମୋକ୍ଷାର୍ଥୀ ମାନଙ୍କ ପକ୍ଷରେ କେଉଁଟି ସହଜ ସେବ୍ୟ ? ସେମାନଙ୍କ ମଧ୍ୟରେ ଅତୀବ ରମଣୀୟ କେଉଁଟି ? ନରସିଂହ କ୍ଷେତ୍ରମାନଙ୍କ ମଧ୍ୟରେ କେଉଁଟି ପ୍ରଧାନ ? ପୁରାଣମାନଙ୍କରେ ମହର୍ଷିମାନେ ଅହୋବଳ, କୃତଶୌଚ, ପାପହର ଓ ସିଂହାଚଳ ନାମରେ ପୁଣ୍ୟସ୍ଥାନମାନ ନିର୍ଦ୍ଦିଷ୍ଟ କରିଥିବା ଦେଖାଯାଏ । ଅତଏବ ଆପଣ ସେ କ୍ରମ ବିଷୟରେ ଆମ୍ଭମାନଙ୍କୁ ଉପଦେଶ ଦିଅନ୍ତୁ । ଜୈମିନି କହିଲେ—"ଋଷିଗଣ ଶ୍ରୀ ନରସିଂହ ଦେବଙ୍କର କ୍ଷେତ୍ରମାନଙ୍କ ମଧ୍ୟରେ ସିଂହାଚଳ ମୁଖ୍ୟ, ରମଣୀୟ, ଶ୍ରେଷ୍ଠ ଓ ଭକ୍ତମାନଙ୍କର ମନୋବାଞ୍ଛା ପରିପୂରକ ବୋଲି ପୁରାଣମାନଙ୍କରେ କୀର୍ତ୍ତିତ ହୋଇଅଛି । କାରଣ, ବରପ୍ରଦ ଶ୍ରୀ ନରସିଂହ ଦେବ ନରସିଂହ ଅବତାର ଗ୍ରହଣ କରିବା ପୂର୍ବରୁ ଶାନ୍ତ ସ୍ୱରୂପ ଧାରଣ କରି ଭକ୍ତ ପ୍ରହ୍ଲାଦଙ୍କର ରକ୍ଷା କରିବା ସକାଶେ ସିଂହାଚଳରେ ଅବତୀର୍ଣ୍ଣ ହୋଇ ଅଛନ୍ତି । ତାପରେ ହିରଣ୍ୟକଶିପୁର ସଂହାର ସକାଶେ ରୌଦ୍ର ଓ ଭୟଙ୍କର ନରସିଂହ ରୂପ ଧରି ଅହୋବଳରେ ଅବତୀର୍ଣ୍ଣ ହୋଇ ଅଛନ୍ତି । ସେଠାରେ ହିରଣ୍ୟକଶିପୁକୁ ବିଦୀର୍ଣ୍ଣ କରି, ନିଜର ରକ୍ତାକ୍ତ ଶରୀରକୁ କୃତଶୌଚ ତୀର୍ଥରେ ଧୋଇଲେ । ଦେବ ଦେବ ନରସିଂହ ସ୍ୱାମୀ ସମସ୍ତ ରାକ୍ଷସମାନଙ୍କୁ ସଂହାର କରି ବିଜନରେ ପାପହର କ୍ଷେତ୍ରରେ ବିଶ୍ରାମ କଲେ । ଏହି କ୍ରମ ଅନୁଯାୟୀ ଶ୍ରୀନରସିଂହ ଦେବଙ୍କର କ୍ଷେତ୍ରମାନଙ୍କ ମଧ୍ୟରେ ସିଂହାଚଳ ପ୍ରଥମ ବୋଲି ଜଣାଯାଏ । ତଥାପି ସିଂହାଚଳରେ ଶ୍ରୀ ନରସିଂହ ସ୍ୱାମୀ ପ୍ରଥମେ ପ୍ରହ୍ଲାଦଙ୍କ କର୍ତ୍ତୃକ ପୂଜିତ ହୋଇଥିଲେ ଏବଂ ହିରଣ୍ୟ କଶିପୁର ବଧ ପରେ ସମସ୍ତ ମାନବ ସମାଜଦ୍ୱାରା ପୂଜିତ ହୋଇ ଆସୁ ଅଛନ୍ତି । ଅହୋବଳ କ୍ଷେତ୍ରରେ ସ୍ତମ୍ଭରୁ ଆବିର୍ଭୂତ ହୋଇ ହିରଣ୍ୟ କଶିପୁକୁ ନଖମାନଙ୍କ ଦ୍ୱାରା ବିଦୀର୍ଣ୍ଣ କରି କୃତଶୌଚ ତୀର୍ଥରେ ସମସ୍ତ ଶରୀର ପ୍ରକ୍ଷାଳନ କରି ନିବିଡ଼ ପାପହର କ୍ଷେତ୍ରରେ ଭକ୍ତ ମାନଙ୍କର କଳୁଷ ଦୂର କରି ଚନ୍ଦ୍ରାନନା ଶ୍ରୀ ଲକ୍ଷ୍ମୀଙ୍କ ସହିତ ସ୍ଥିର ଭାବେ ସିଂହାଚଳ କ୍ଷେତ୍ରରେ ଅବସ୍ଥାନ କରନ୍ତି । ସେହି ନରସିଂହ ସ୍ୱାମୀ ସମସ୍ତଙ୍କୁ ରକ୍ଷା କରନ୍ତୁ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ଶ୍ରୀ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟ ବର୍ଣ୍ଣନଂ ନାମ ପ୍ରଥମୋଽଧ୍ୟାୟଃ ।



# ଦ୍ୱିତୀୟ ଅଧ୍ୟାୟ

ଜୈମିନ କହିଲେ—

ଦ୍ୱିଜଗଣ, ଏହି ସିଂହାଚଳ ସତ୍ୟ ଯୁଗରେ ପାଞ୍ଚ ଯୋଜନ ବିସ୍ତୀର୍ଣ୍ଣ ଥିଲା । କଳି ଯୁଗରେ ପାଞ୍ଚ କୋଶ ମାତ୍ର ବିସ୍ତୀର୍ଣ୍ଣ ହୋଇ ଶୋଭା ପାଏ । ଏହି ସିଂହାଚଳର ଶୃଙ୍ଗ ପାଖରେ ଥିବା ପାଞ୍ଚ ଯୋଜନପରିମିତ ପର୍ବତମୟ ଭୂଭାଗ ଅତ୍ୟନ୍ତ ଶ୍ରେଷ୍ଠ ଏବଂ ପଶୁ ପକ୍ଷି ମୃଗାଦ ମାନଙ୍କର ମଧ୍ୟ ମୋକ୍ଷ ଓ ପୁଣ୍ୟପ୍ରଦ-କ୍ଷେତ୍ର ରୂପେ ପରିଚିତ । ଏହି ପବିତ୍ର କ୍ଷେତ୍ରରେ ସଦା ବାସ କରି ଶ୍ରୀ ନରସିଂହ ଦେବଙ୍କୁ ପୂଜା କରୁଥିବା ମନୁଷ୍ୟମାନେ ଜ୍ଞାତସାରରେ ବା ଅଜ୍ଞାତସାରରେ କରିଥିବା ସମସ୍ତ ପାପ ନଷ୍ଟ ହୋଇଯାଏ । ଏହି କ୍ଷେତ୍ରରେ ପ୍ରାଣ ତ୍ୟାଗ କଲେ ମନୁଷ୍ୟମାନେ ସାରୂପ୍ୟ ସିଦ୍ଧି ଲାଭ କରି ଶ୍ରୀ ନରସିଂହ ସ୍ୱାମୀଙ୍କ ପରି ଚତୁର୍ଭୁଜ ଓ ପୀତାମ୍ବରଦ୍ୱାରା ବିଭୂଷିତ ହୋଇ ପରମ ପଦ ଲାଭ କରନ୍ତି ଏବଂ ଅମରତ୍ୱ ଲାଭ କରନ୍ତି । ଦେବତାମାନେ ମଧ୍ୟ ଏହି କ୍ଷେତ୍ରରେ ଦେହ ତ୍ୟାଗ କରିବାକୁ ବାଞ୍ଛନ୍ତି । କିନ୍ନରମାନେ ନର ବା ବାନର ରୂପରେ ମଧ୍ୟ ଏହି କ୍ଷେତ୍ରରେ ରହିବାକୁ ଇଚ୍ଛା କରନ୍ତି । ଏଠାର ଅଧିବାସୀମାନେ ଧନ୍ୟ । ଏହି କ୍ଷେତ୍ରରେ ଜନ୍ମ କଲାମାତ୍ରେ ସମସ୍ତ ପାପ ନଷ୍ଟ ହୁଏ । ଅନ୍ୟ ସ୍ଥାନବାସୀ ହେଲେ ମଧ୍ୟ ଏହି ସ୍ଥାନ ବାସିନ୍ଦାଙ୍କର ସହିତ ଶାରୀରିକ ସମ୍ପର୍କ ଲାଭ କଲେ ସକଳ ପାପରୁ ମୁକ୍ତ ହୁଏ । ଦେଶାନ୍ତର ବାସୀ ହେଲେ ମଧ୍ୟ ସିଂହାଚଳ ସମ୍ମୁଖରେ ରହି ନମସ୍କାର କଲା ମାତ୍ରେ ଉତ୍ତମ ଗତି ପାଏ । ନିତ୍ୟମ ପରିପାଳନ ପୂର୍ବକ ସିଂହାଚଳରେ ବାସ କରନ୍ତି, ସେମାନେ ମେରୁ ଶିଖରବାସୀ ଦେବତାଙ୍କ ସମାନ ପୂଜା ପାଆନ୍ତି । ଯେଉଁ ଲୋକ ସିଂହାଚଳ ଉପରେ ଚଢ଼ି, ପଶ୍ଚିମାଭିମୁଖରେ ପ୍ରବାହିତ ଗଙ୍ଗା ଧାରରେ ଭକ୍ତି ଶ୍ରଦ୍ଧା ପୂର୍ବକ ଏକ ବାର ମାତ୍ର ସ୍ନାନ କରି ପଶ୍ଚିମାଭିମୁଖୀ ହୋଇ ପ୍ରଶାନ୍ତ ମୂର୍ତ୍ତି ଶ୍ରୀ ନରସିଂହ ଦେବଙ୍କୁ ଦର୍ଶନ କରନ୍ତି, ସେ ମନୁଷ୍ୟ ଅନେକ ଜନ୍ମାର୍ଜିତ, ସଞ୍ଚିତ, ପୂର୍ବକୃତ ସକଳ ପାପରୁ ବିମୁକ୍ତ ହୁଅନ୍ତି । ବିପ୍ରଗଣ, ସୂର୍ଯ୍ୟ ଗ୍ରହଣ ସମୟରେ କୁରୁ କ୍ଷେତ୍ରରେ ବେଦଜ୍ଞ ବ୍ରାହ୍ମଣଙ୍କୁ ହଜାର ମହଣ ସୁବର୍ଣ୍ଣ ଦାନ କଲେ ଯେଉଁ ଫଳ ମିଳିବ, ସେହି ଫଳ ଅବିକଳ ଏହି କ୍ଷେତ୍ରରେ ଗୁଞ୍ଜା ମାତ୍ର ସୁନା ଏକ ବ୍ରାହ୍ମଣକୁ ଦାନ କଲେ ମିଳିଥାଏ । ପ୍ରୟାଗରେ କାର୍ତ୍ତିକ ମାସରେ ଏକ ଲକ୍ଷ ବ୍ରାହ୍ମଣଙ୍କୁ ଦାନ ଦେଲେ ଯେଉଁ ଫଳ ମିଳେ, ସେହି ଫଳ ଏହି କ୍ଷେତ୍ରରେ ଏକ ବ୍ରାହ୍ମଣକୁ ଦାନ ଦେଲେ ମିଳେ । ସୁନାରେ ଶୃଙ୍ଗ ବିଭୂଷିତ କରି ଦଶ

ହଜାର ଗାଈଙ୍କୁ ଦାନ କଲେ ଯେଉଁ ଫଳ ମିଳେ ଏଠାରେ ଅଳଂକାର ଭୂଷିତ ଏକ ଗାଈକୁ ଦାନ କଲେ ଅବିକଳ ସେହି ଫଳ ମିଳେ ମକର ମାସର ସମସ୍ତ ଦିନରେ ପ୍ରୟାଗରେ ପ୍ରାତଃସ୍ନାନ କଲେ ଯେଉଁ ଫଳ ମିଳେ, ଅବିକଳ ସେହି ଫଳ ସିଂହାଚଳରେ ଏକ ଦିନ ଗଙ୍ଗାଧାରରେ ପ୍ରାତଃସ୍ନାନ କଲେ ସମ୍ଭବ ଥାଏ। ଯମୁନା ଓ ସରସ୍ୱତୀଙ୍କ ମିଳନ ସ୍ଥାନରେ ଗଙ୍ଗାଙ୍କର ଯେଉଁ ମାହାତ୍ମ୍ୟ ଠିକ୍ ସେହି ମାହାତ୍ମ୍ୟ ସିଂହାଚଳରେ ପଶ୍ଚିମବାହିନୀ ଗଙ୍ଗାଧାରର । ଅତଏବ ପ୍ରତିଦିନ ଏହି ଗଙ୍ଗାଧାରରେ ସ୍ନାନ କଲେ କ୍ଷୟ, ଅପସ୍ମାର, କୁଷ୍ଠ ପ୍ରଭୃତି ମହାବ୍ୟାଧି ଦୂର ହୁଏ ଓ ସକଳ ପ୍ରକାର ମନୋଗତ ଭାବ ମଧ୍ୟ ପୂର୍ଣ୍ଣ ହୁଏ । କନ୍ୟା ମାସରେ ଗଙ୍ଗା ନଦୀ ତୀରସ୍ଥ ବିଷ୍ଣୁ ପାଦରେ ପିଣ୍ଡଦାନ କଲେ ଯେଉଁ ଫଳ ଲବ୍ଧ ହୁଏ, ମନ୍ତ୍ରପୂତ ହୋଇ ଦକ୍ଷିଣା ଦେଇ ଶ୍ରାଦ୍ଧ କଲେ ପିତୃ ଦେବତାମାନେ ଯେପରି ତୃପ୍ତ ହୁଅନ୍ତି, ବିପ୍ରଗଣ, ଗଙ୍ଗାଧାର ସମୀପରେ ଶ୍ରାଦ୍ଧ କରି ପିଣ୍ଡଦାନ କଲେ ଅବଶ୍ୟ ସେହି ଫଳ ମିଳେ—ଏହା ତିନି ବାର ସତ୍ୟ । ମୁଁ ଆପଣମାନଙ୍କୁ ଏହି ରହସ୍ୟ କହୁଅଛି । ମୁନିଗଣ, ପ୍ରହ୍ଲାଦଙ୍କର ରକ୍ଷା ସକାଶେ ଶ୍ରୀମାନ୍ ନାରାୟଣ ନିଜେ ଏହି ସିଂହାଚଳରେ ଅବତୀର୍ଣ୍ଣ ହୋଇ ଅଛନ୍ତି । ଅନେକ ଦିନ ପ୍ରହ୍ଲାଦ ନିଜେ ପୂଜା କରୁଥିଲେ । ଚତୁର୍ମୁଖ ବ୍ରହ୍ମା, ତ୍ରିପୁରାନ୍ତକ ଶଙ୍କର, ଇନ୍ଦ୍ରାଦି ଅଷ୍ଟଦିକ୍‌ପାଳ, ଅଷ୍ଟବସୁ, ଦ୍ୱାଦଶ ଆଦିତ୍ୟ, ମରୁଦ୍‌ଗଣ, ସିଦ୍ଧ ଓ ସାଧ୍ୟ ଏବଂ ସେହି ସେହି ସମୟର ଅସଂଖ୍ୟ ରାଜାମାନେ ମଧ୍ୟ ସର୍ବକାମପ୍ରଦ ସିଂହାଚଳାଧିପତି ନରସିଂହ ଦେବଙ୍କୁ ପୂଜା କରୁଥିଲେ । ଏହିପରି ଅନେକ ଯୁଗ ଅତିବାହିତ ହେବା ପରେ ଏକ ସମୟରେ ନରସିଂହଦେବ କୌଣସି ଆରାଧନା ନପାଇ ବିଜନରେ ଥିଲେ । ପରେ କେତେକାଳ ଉତ୍ତାରୁ ଚକ୍ରବର୍ତ୍ତୀ ପୁରୁରବା ଗୋଷ୍ଠୀରେ ଅଭିଷେକ କଲାରୁ ଶ୍ରୀ ନରସିଂହ ସ୍ୱାମୀ ପୁଣି ଅବିର୍ଭୂତ ହେଲେ । ସେ ଦିନଠାରୁ ଚକ୍ରବର୍ତ୍ତୀ ପୁରୁରବା ପ୍ରତିଦିନ ସୁସମୃଦ୍ଧ ଉପଚାରରେ ପୂଜା କରି ଚନ୍ଦନ ଯାତ୍ରା ପ୍ରଭୃତି ଉତ୍ସବମାନ ପ୍ରତିବର୍ଷ ଚଳାଉଥିଲେ । ଶତାଧିକ ପ୍ରଭୃତି ସେହି ଚକ୍ରବର୍ତ୍ତୀଙ୍କର ବଂଶଧରମାନେ ଏପର୍ଯ୍ୟନ୍ତ ଶ୍ରୀ ନରସିଂହ ସ୍ୱାମୀଙ୍କୁ ପୂଜା କରି ଆସୁ ଅଛନ୍ତି । ସେହି ସେହି ଉତ୍ସବମାନଙ୍କରେ ଶ୍ରୀ ନରସିଂହ ସ୍ୱାମୀଙ୍କ ଦର୍ଶନ ଆମ୍ଭମାନଂକର ଘଟୁ ଏବଂ ଆମ୍ଭମାନଂକର ସକଳ ପ୍ରକାର ମଙ୍ଗଳ ସାଧିତ ହେଉ । କଳିକାଳ ନିକଟବର୍ତ୍ତୀ ହେବା ହେତୁ ଆମ୍ଭମାନଙ୍କ ପରି ତପୋଧନମାନେ ସେହିପରି ସ୍ଥାନରେ ରହିବା ସମ୍ଭବପର ନୁହେଁ । ସିଂହାଚଳରେ ଶ୍ରୀ ନରସିଂହ ସ୍ୱାମୀଙ୍କୁ ଦର୍ଶନ କରି ଗନ୍ଧମାଦନ ପର୍ବତକୁ ଯାଉଥିବା । କଳି କାଳରେ

ମଧ୍ୟ ଭକ୍ତ ଓ ଶ୍ରଦ୍ଧାବାନ୍ ମନୁଷ୍ୟ ଶ୍ରୀ ନରସିଂହ ସ୍ୱାମୀଙ୍କୁ ସୁନ୍ଦର ରୂପେ ଆରାଧନା କଲେ ଦୁର୍ଲଭ ମୁକ୍ତି ଲାଭ କରିଥାଏ । ମୁକ୍ତି ହେତୁକ ମନୁଷ୍ୟ ଜନ୍ମ ଅତ୍ୟନ୍ତ ଦୁର୍ଲଭ । ସେ ଜନ୍ମ ଲବ୍ଧ ଯେଉଁ ଲୋକ ସିଂହାଚଳାଧୀଶଙ୍କ ଦର୍ଶନ ପାଏ ନାହିଁ, ସେ ଦୈବବଞ୍ଚିତ ବୋଲି ଭାବିବାକୁ ହେବ । ଯେଉଁ ଲୋକ ସିଂହାଚଳ-ନାଥଙ୍କ ସେବା କରେ, ସେ କଷ୍ଟ ପରମ୍ପରାରେ ଭରିତ ସଂସାରରେ ଆଉ ଜନ୍ମ ଗ୍ରହଣ କରେ ନାହିଁ ଏବଂ ସେ ବିଷ୍ଣୁଙ୍କ ପରମ ପଦ ବୈକୁଣ୍ଠ ସ୍ଥାନ ଲାଭ କରେ । ଯେଉଁ ଲୋକ କାମ କ୍ରୋଧାଦି ଅରିଷଡ଼୍ ବର୍ଗ ଜୟ କରି ଶମଦମାଦିଗୁଣ ସମ୍ପନ୍ନ ହୋଇ ସିଂହାଚଳରେ ବାସ କରେ, ସେ ଜୀବନ୍ମୁକ୍ତ ହୁଏ । ଏହେତୁ ମୋକ୍ଷାର୍ଥୀ ବୈରାଗୀ ଯତ୍ନସହକାରେ ନିରୁପଯୋଗ ଅନ୍ୟାନ୍ୟ କ୍ଷେତ୍ର ତ୍ୟାଗ କରି ସବୁବେଳେ ସିଂହାଚଳରେ ବାସ କରିବ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟ ବର୍ଣ୍ଣନଂ ନାମ ଦ୍ୱିତୀୟୋଽଧ୍ୟାୟଃ ।

—୦—

# ତୃତୀୟ ଅଧ୍ୟାୟ

ଜୈମିନି କହିଲେ—ଦ୍ୱିଜଗଣ, ଆପଣମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବେ—ସିଂହାଚଳ ମହିମା ଆହୁରି କହୁଅଛି ଶୁଣନ୍ତୁ । ଛଅଟି ଋତୁର ଧର୍ମ ସବୁ ସମୟରେ ଯେଉଁ ପର୍ବତରେ ପ୍ରକାଶ ପାଉଥାଏ—ସେହି ସିଂହାଚଳର ମହିମା କିଏ କହିପାରିବ ? ଭୂମଣ୍ଡଳରେ ମହେନ୍ଦ୍ର ପର୍ବତ ପ୍ରଭୃତି ଅନେକ ପର୍ବତ ଅଛନ୍ତି; କେହି ହେଲେ ସିଂହାଚଳର ସମକକ୍ଷ ନୁହନ୍ତି । ଯେଉଁ ପର୍ବତରେ ସ୍ନାନ କଲାମାତ୍ରେ ମନୁଷ୍ୟମାନଙ୍କୁ ପବିତ୍ର କରୁଥିବା ଏବଂ ଶୀତଳ ଜଳରେ ପରିପୂରିତ ପ୍ରସିଦ୍ଧ ଗଙ୍ଗାନଦୀମାନେ ଧାରାରୂପରେ ପ୍ରବାହିତ ହୁଅନ୍ତି, ଯେଉଁ ପର୍ବତରେ ସଦା ଫଳ ପୁଷ୍ପାଦି ପରିପୂର୍ଣ୍ଣ ନାରିକେଳ, ଅର୍ଜ୍ଜୁନ, ଡ଼ାଳିମ୍ବ, ଆମ୍ର, ଦେବଦାରୁ, ଜମ୍ବୁ, ନିମ୍ବ, ଚମ୍ପକ, ଗଙ୍ଗଶିଉଳି, ଅଶୋକ, ବେଲ, କପିଥ, ଅଁଳା, ଧଳାସାହାଡ଼, ତାଳ, ଶାଳପ, ଖର୍ଜ୍ଜୁର, ନିମ୍ବେଣୀ, ବାଉଁଲ, ଗାମ୍ଭାରି କର୍ପୂର, କିଆ, କେତକୀ, ମଲ୍ଲୀ, ପୁନ୍ନାଗ······କଦଳୀ ପ୍ରଭୃତି ବୃକ୍ଷ ବର୍ଗରେ ପରିପୂର୍ଣ୍ଣ ବିଶାଳ ଉଦ୍ୟାନ ଶୋଭାପାଏ, ଯେଉଁ ପର୍ବତରେ ଗୁହାମାନଙ୍କରେ କିନ୍ନର, ଉରଗ, ରାକ୍ଷସାଦି ନିଜ ନିଜ ପ୍ରେୟସୀମାନଙ୍କ ସହ କ୍ରୀଡ଼ା କରନ୍ତି, ଯେଉଁ ପର୍ବତରେ ଗନ୍ଧର୍ବମାନେ ସୁମଧୁରସ୍ୱରରେ ଗାନ କରୁଅଛନ୍ତି, ଯେଉଁ ପର୍ବତର ଶୃଙ୍ଗମାନଙ୍କରେ ବ୍ରହ୍ମା ପ୍ରଭୃତି ଦେବତାମାନେ ପରମ ପାବନ ନରସିଂହସ୍ୱାମୀଙ୍କ ଚରିତ ଗାନ କରୁଅଛନ୍ତି, ଯେଉଁ ପର୍ବତରେ ଷଡ଼ଗୁଣଯୁକ୍ତ ଷଟ୍‌କର୍ମ ନିରତ ବ୍ରାହ୍ମଣମାନେ ଦୀକ୍ଷା ଗ୍ରହଣ କରି ରାକ୍ଷସ କୁଳଧୂମକେତୁ ଶ୍ରୀ ନରସିଂହଦେବଙ୍କୁ ସ୍ତୁତି ପ୍ରଣାମାଦି ଦ୍ୱାରା ଆରାଧନା କରୁ ଅଛନ୍ତି, ଯେଉଁ ପର୍ବତରେ ବାରାଙ୍ଗନାମାନେ ଦେବକାନ୍ତାମାନଙ୍କୁ ସୌନ୍ଦର୍ଯ୍ୟରେ ଧିକ୍‌କାର କରି ହାବଭାବାଦିରେ ସମସ୍ତଙ୍କର ମନ ଆକର୍ଷଣ କରି ଶ୍ରୀ ନରସିଂହ ସ୍ୱାମୀଙ୍କ ସମ୍ମୁଖରେ ନୃତ୍ୟ କରନ୍ତି, କନ୍ଦମୂଳଫଳାଶୀ, ଦୃଢ଼ବ୍ରତ ମୁନିମାନେ ପର୍ବତର ବିଜନ ଗୁହାମାନଙ୍କରେ ସବୁବେଳେ ତପସ୍ୟା କରନ୍ତି, ଯମନିୟମାସନାଦିନିରତ ଜିତେନ୍ଦ୍ରିୟ ସିଦ୍ଧମାନେ ପରମ ଜ୍ୟୋତି ରୂପୀ ଶ୍ରୀ ନରସିଂହସ୍ୱାମୀଙ୍କୁ ଧ୍ୟାନ କରନ୍ତି, ଯେଉଁ ପର୍ବତରେ ଓଷଧିମାନେ ରାତ୍ରିରେ ଦୀପଶିଖା ପରି ଦେଦୀପ୍ୟମାନ ଦେଖାଯାନ୍ତି, ଚନ୍ଦ୍ରୋଦୟରେ ଜଳସ୍ରାବୀ ଚନ୍ଦ୍ରକାନ୍ତ ମାଣିକ୍ୟ ପରି ଶିଳାମାନେ ସବୁବେଳେ ଦ୍ରୁତ ଦେଖାଯାନ୍ତି, ଯେଉଁ ପର୍ବତରେ ଗୈରିକାଦି ଧାତୁରେ ଉଦ୍ଭାସିତ ଯୂଥ ଯୂଥ ହସ୍ତୀମାନେ ସ୍ୱଚ୍ଛନ୍ଦରେ ବିହାର କରନ୍ତି ଯେଉଁ ପର୍ବତରେ ଶୁଆ, ଶାରିକା ଓ କୋକିଳମାନେ ମଧୁରଗାନ କରନ୍ତି, ଯେଉଁ ପର୍ବତରେ ମଧୁକର ଦମ୍ପତି ମଧୁର ଝଙ୍କାର ରବରେ ବନକୁ ମୁଖରିତ କରି ବିହାର କରନ୍ତି, ଯେଉଁ ପର୍ବତରେ

ମୟୂରମାନେ ନିଜ ନିଜ ପ୍ରେୟସୀ ସହିତ ପିଚ୍ଛ ବିସ୍ତାର କରି କେକାନାଦରେ ଅପୂର୍ବ ଶୋଭା ଉତ୍ପାଦନ କରନ୍ତି, ଯେଉଁ ପର୍ବତରେ ପୁଷ୍ପମାନଙ୍କର ପରାଗରେ ଭରି; ଶୀତଳଧାରାର କଣିକାବାହୀ ଶୀତଳ ପବନ ପର୍ବତାରୋହଣଜନିତ ଭକ୍ତ-ମାନଙ୍କର ଶ୍ରମ ଅପନୋଦନ କରୁଅଛି, ଅଧିକ କଥା ଦୂରେ ଥାଉ ସଂସାରରେ ଯେତେ ଯେତେ ଆଶ୍ଚର୍ଯ୍ୟକର ବସ୍ତୁ ଅଛନ୍ତି, ସେ ସମସ୍ତର ଆଧାର ଶ୍ରୀ ନରସିଂହ ସ୍ୱାମୀଙ୍କୁ ଏକଦାର ପ୍ରଦକ୍ଷିଣ କଲା ମାତ୍ରେ ସମଗ୍ର ଭୂମଣ୍ଡଳ ପ୍ରଦକ୍ଷିଣ କରିବାର ଫଳ ମିଳେ, ସେହି ସିଂହାଚଳର ମାହାତ୍ମ୍ୟ କେତେ ବଡ଼ ଚତୁର ହେଲେ ମଧ୍ୟ ବର୍ଣ୍ଣନା କରିପାରିବେ ନାହିଁ । ମୃଗ ମଧ୍ୟରେ ସିଂହ, ମନୁଷ୍ୟ ମଧ୍ୟରେ ବ୍ରାହ୍ମଣ, ଦେବତା ମଧ୍ୟରେ ବ୍ରହ୍ମା, ଋଷି ମଧ୍ୟରେ ବ୍ୟାସ, ଗୋମଧ୍ୟରେ କାମଧେନୁ, ଲୌହ ମଧ୍ୟରେ ସ୍ୱର୍ଣ୍ଣ, ବୃକ୍ଷ ମଧ୍ୟରେ କଳ୍ପବୃକ୍ଷ, ତୃଣ ମଧ୍ୟରେ ଦର୍ଭ, ଲତା ମଧ୍ୟରେ ମାଳତୀ, ପୁଷ୍ପ ମଧ୍ୟରେ ପଦ୍ମ; ବେଶ୍ୟା ମଧ୍ୟରେ ଉର୍ବଶୀ, ନଦୀ ମଧ୍ୟରେ ଗଙ୍ଗା, ସର ମଧ୍ୟରେ ମାନସ ସରୋବର, ଲୋକ ମଧ୍ୟରେ ସତ୍ୟଲୋକ, ଗ୍ରହ-ମଧ୍ୟରେ ସୂର୍ଯ୍ୟ, ନକ୍ଷତ୍ର ମଧ୍ୟରେ ଚନ୍ଦ୍ରମା, ସମୁଦ୍ର ମଧ୍ୟରେ କ୍ଷୀର ସମୁଦ୍ର, ଦିକ୍‌ପାଳ ମଧ୍ୟରେ ଇନ୍ଦ୍ର, ବସୁ ମଧ୍ୟରେ ବାସବ, ଯାଗ ମଧ୍ୟରେ ଅଶ୍ୱମେଧ, ଜ୍ଞାନ ମଧ୍ୟରେ ଅଧ୍ୟାତ୍ମଜ୍ଞାନ, ଉପାସ୍ୟଦେବ ମଧ୍ୟରେ ନାରାୟଣ, ଚାରି ପୁରୁଷାର୍ଥ ମଧ୍ୟେ ମୋକ୍ଷ ବ୍ରତ ମଧ୍ୟରେ ଏକାଦଶୀ ବ୍ରତ, ଦୀକ୍ଷା ମଧ୍ୟରେ ବୈଷ୍ଣବ ଦୀକ୍ଷା, ଏବଂ କ୍ଷେତ୍ର ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ର ଯେପରି ସର୍ବଶ୍ରେଷ୍ଠ, ଯେପରି ବିଷ୍ଣୁଙ୍କର ସମସ୍ତ ଅବତାର ମଧ୍ୟରେ ନରସିଂହାବତାର ସର୍ବ ଶ୍ରେଷ୍ଠ ଓ ପ୍ରଧାନ ସେହିପରି ସମସ୍ତ ପର୍ବତ ମଧ୍ୟରେ ସିଂହାଚଳ ସର୍ବଶ୍ରେଷ୍ଠ । ଦ୍ୱିଜଗଣ, ସିଂହାଚଳ ସମାନ କ୍ଷେତ୍ର, ଗଙ୍ଗାଧାର ସମାନ ତୀର୍ଥ, ଶ୍ରୀ ନରସିଂହ ସ୍ୱାମୀ ସମାନ ଦେବତା, ତିନି ଭୁବନରେ କଦାପି ମିଳିବେ ନାହିଁ । ସର୍ବତୀର୍ଥ ପରିପୂରକ ସର୍ବ ପାପ ନାଶକ ସିଂହାଚଳ-କ୍ଷେତ୍ରର ମହିମା ମୁଁ ଆପଣଙ୍କୁ କହିଲି । ଯେଉଁ ଲୋକ ଏହି କ୍ଷେତ୍ର ମହିମା ପଢ଼ିବେ, ଶୁଣିବେ, ଅନ୍ୟମାନଙ୍କୁ ଶୁଣାଇବେ ସେହି ମନସ୍ୱୀମାନେ ସମସ୍ତ ପାପ ଦୂର କରି ସ୍ୱର୍ଗ ଲାଭ କରନ୍ତି । ଏକାଦଶୀ, ଅମାବାସ୍ୟା, ପୌର୍ଣ୍ଣମୀ ଓ ସଂକ୍ରାନ୍ତି ଦିନ, ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ଦିନ, ଯେଉଁଲୋକ ନରହରି ଦୀକ୍ଷା ଗ୍ରହଣ କରି ଶ୍ରୀ ନରସିଂହ ସ୍ୱାମୀଙ୍କୁ ପୂର୍ଣ୍ଣଭାବେ ଆରାଧନା କରି କ୍ଷେତ୍ର ମାହାତ୍ମ୍ୟ ଶୁଣିବେ ସେମାନେ ମୋକ୍ଷ ଲାଭ କରିବେ ।

ଇତି ଶ୍ରୀ ସ୍କନ୍ଦପୁରାଣେ ବିଷ୍ଣୁଖଣ୍ଡେ ଶ୍ରୀ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟ ବର୍ଣ୍ଣନଂ ନାମ ତୃତୀୟୋଽଧ୍ୟାୟଃ ।

# ଚତୁର୍ଥ ଅଧ୍ୟାୟ

ଋଷିମାନେ ପ୍ରଶ୍ନ କଲେ—ମୁନିବର୍ଯ୍ୟ, ହିରଣ୍ୟ କଶିପୁ କିଏ ? ପ୍ରହ୍ଲାଦ କିଏ ? ଏ ଦୁହେଁ ପିତା ପୁତ୍ର ରୂପେ କିପରି ଜନ୍ମ ଲାଭ କଲେ ? ପରମଭକ୍ତ ପ୍ରହ୍ଲାଦ ହିରଣ୍ୟ କଶିପୁର ପୁତ୍ର ରୂପେ ଜନ୍ମ ହୋଇ ରାକ୍ଷସ ଧର୍ମ ତ୍ୟାଗ କରି କିପରି ବିଷ୍ଣୁ ଭକ୍ତ ହେଲେ ? ଏ ସମସ୍ତ ସମ୍ବନ୍ଧରେ ଆମ୍ଭମାନଙ୍କୁ କହିବା ହୁଅନ୍ତୁ । ଅଂହୁନ ବ୍ରହ୍ମା ଓ ଶଙ୍କରାଦିଙ୍କ ଦ୍ୱାରା ଶ୍ରୀ ନୃସିଂହଦେବସ୍ୱାମୀ କେବେ ପୂଜିତ ହୋଇ ଥିଲେ ? କେବେ ଏକାନ୍ତ ବିଜନରେ ଥିଲେ ? ପୁଣି ପୁରୂରବା ଚକ୍ରବର୍ତ୍ତୀଙ୍କ ଦ୍ୱାରା କିପରି ଆବିଷ୍କୃତ ହୋଇ ପୂଜିତ ହେଲେ ? କେଉଁ କେଉଁ ଦିନମାନଙ୍କରେ କି କି ଉତ୍ସବ ହୁଏ, ମହାତ୍ମା ଶ୍ରୀ ନରସିଂହ ସ୍ୱାମୀଙ୍କର ଦର୍ଶନରେ କି କି ଫଳ ମିଳେ, ଏ ସମସ୍ତ ପ୍ରଶ୍ନର ଉତ୍ତର ଏବଂ ଆମ୍ଭମାନଙ୍କର ଶ୍ରବଣ ଯୋଗ୍ୟ ଅନ୍ୟାନ୍ୟ ବିଷୟ ଏବଂ ସର୍ବ ପାପହର ଦେବ ଦେବ ଶ୍ରୀ ନରସିଂହ ଦେବଙ୍କର ମାହାତ୍ମ୍ୟ ଶ୍ରୁତି-ପରାୟଣ ଆମ୍ଭମାନଙ୍କୁ କହି କୃତାର୍ଥ କରନ୍ତୁ—ଏହା ଆମ୍ଭମାନଙ୍କର ପ୍ରାର୍ଥନା । ଜୈମିନି କହିଲେ—ପୁରାତନ କଳିକଳ୍ମଷନାଶନ ବ୍ୟାସୋପଦିଷ୍ଟ ଇତିହାସ ମୁଁ ବିଶଦ ଭାବେ ଆପଣମାନଙ୍କୁ କହିବି । ଆପଣମାନେ ସାବଧାନ ହୋଇ ଶ୍ରଦ୍ଧାରେ ଶ୍ରବଣ କରନ୍ତୁ—ଦ୍ୱିଜଗଣ, ପୂର୍ବରେ ସତ୍ୟଯୁଗରେ 'ହିରଣ୍ୟ କଶିପୁ' ନାମରେ ଏକ ରାକ୍ଷସରାଜା ଥିଲେ । ତାଙ୍କର ହିରଣ୍ୟାକ୍ଷ ନାମରେ ଏକ ସହୋଦର ଭାଇ ଥିଲେ । ଏମାନେ ପୂର୍ବେ ଶଙ୍ଖ ଚକ୍ର ଗଦା ପଦ୍ମ ଧାରି ଜୟ ବିଜୟ ନାମରେ ଭଗବାନ୍ ନାରାୟଣଙ୍କର ଦ୍ୱାରପାଳ ଥିଲେ । ଏକ ସମୟରେ କ୍ରୀଡ଼ାରତ ବାଳକ ସଦୃଶ ଦିଗମ୍ବରମାନ ସନକାଦି ସପ୍ତର୍ଷି ଭଗବାନ୍ ନାରାୟଣଙ୍କର ଦର୍ଶନ ସକାଶେ ବୈକୁଣ୍ଠପୁର ଦ୍ୱାର ଦେଶରେ ଉପସ୍ଥିତ ହେଲେ । ଜୟ ଓ ବିଜୟ ସେମାନଙ୍କୁ ଭିତରକୁ ଯିବାକୁ ବାରଣ କଲେ । ସେମାନଙ୍କର କ୍ରୋଧ ଜାତହେଲା । ଏ ସମୟରେ ବାହାରରୁ ମୁକ୍ତାମାନଙ୍କ ଦ୍ୱାରା ସ୍ତୁତ ଗରୁଡ଼ାରୋହୀ ଭଗବାନ୍ ନାରାୟଣ ହଠାତ୍ ସେଠାରେ ଉପସ୍ଥିତ ହୋଇ ଦ୍ୱାର ଦେଶରେ କ୍ରୁଦ୍ଧ ବିଗ୍ରହଗ୍ରସ୍ତ ସେହି କୁମାର-ମାନଙ୍କୁ ଦେଖି ଆପଣମାନେ କାହିଁକି ବିସ୍ମୟଗ୍ରସ୍ତ ବୋଲି ଆଗ୍ରହ ସହକାରେ ପଚାରିଲେ । ସନକାଦି ସପ୍ତର୍ଷି ସାଷ୍ଟାଙ୍ଗ ପ୍ରଣିପାତ କରି ସେହି ଦୁଇ ରାକ୍ଷସପ୍ରକୃତି ଦ୍ୱାରପାଳଙ୍କ ଦ୍ୱାରା ଅବରୁଦ୍ଧ ଥିଲେ ବୋଲି କହିଲେ ଏବଂ ଚଞ୍ଚଳ ଆସନରୁ ଉଠି ସାଷ୍ଟାଙ୍ଗ ପ୍ରଣାମ କରି ବାଳକ ରୂପୀ ସେହି ସପ୍ତର୍ଷି ଅଞ୍ଜଳି ଯୋଡ଼ି ବିଷ୍ଣୁଙ୍କୁ ସ୍ତୁତି କଲେ—

| | |
|---|---|
| ଜୟ ଜଗନ୍ନାଥ | ଇନ୍ଦ୍ରସ୍ୱ ନାୟକ |
| ଜୟ ଯୋଗୀଶ୍ବର | ବ୍ରହ୍ମାଣ୍ଡ ବ୍ୟାପକ |
| ଜୟ ଲକ୍ଷ୍ମୀପ୍ରିୟ | ସଦାନନ୍ଦ ମୂର୍ତ୍ତି । |
| ଜୟ ଜୟ ଶ୍ରୀନ | ପରଂବ୍ରହ୍ମାକୃତି ॥ |
| ତୁମ୍ଭ ନାଭି ପଦ୍ମ | ଜନ୍ମି ପଦ୍ମାସନ |
| କରୁଛନ୍ତି ତଷ୍ଟୁ | ସଂସାର ସର୍ଜନ । |
| ସତ୍ ମୂର୍ତ୍ତି ଧରି | ଆପଣ ଭୁବନ |
| ଅନାୟାସେ କରୁ | ଅଛନ୍ତି ପାଳନ ॥ |
| ତମରୂପ ଧରି | ପୁଣି ତାର ନାଶ |
| କେ ଅବା କରିବ | ମହିମା ପ୍ରକାଶ ॥ |
| ତୁମେ ଏବ୍ ରଜ | ତମର କାରଣ, |
| ସର୍ବ ବ୍ୟାପୀ ପ୍ରଭୁ | ତୁମେହିଁ ମହାନ ॥ |
| ତୁମେ ଅହଙ୍କାର | ପଞ୍ଚଜ୍ଞାନେନ୍ଦ୍ରିୟ |
| ପଞ୍ଚ ମହାଭୂତ | ଶବ୍ଦାଦ ବିଷୟ ॥ |
| ଇନ୍ଦ୍ରିୟ, ବିଷୟ | ତଥା ପଦାର୍ଥରେ |
| ତୁମେ ପଶିଅଛ | ବିବିଧ ଆକାରେ । |
| ତୁମ୍ଭେ ମୁହୂର୍ତ୍ତନୟ- | ନ୍ତି ତ କଳା କାଷ୍ଠା— |
| ନିମେଷାଦ କାଳ | ତୁମ୍ଭେ ସର୍ବସ୍ରଷ୍ଟା । |
| ସୃଷ୍ଟି ରକ୍ଷା କର୍ତ୍ତା | ତୁମ୍ଭେ ତା ନାଶକ |
| ତୁମେ ବିଶ୍ବରୂପୀ | ତୁମେ ସର୍ବାତ୍ମକ ॥ |
| ତୁମେ ଜ୍ଞାନନିଧି | ପ୍ରପଞ୍ଚ ସ୍ୱରୂପ, |
| ଶ୍ରୁତି ବେଦସବ | କରଇ ଆବେଦ ॥ |
| ସମୁଦ୍ରରେ ଯଥା | ଉଠି ତାର ବୀଚି |
| ବଢ଼ି ପୁଣି ତହିଁ | ବିଳୟ ଭଜନ୍ତି ॥ |
| ତୁମ୍ଭଠାରୁ ଜନ୍ମି | ତଥା ଏ ଭୁବନ |
| ତୁମ୍ଭଦ୍ୱାରା ବଢ଼ି | ତୁମ୍ଭଠାରେ ଲୀନ ॥ |
| ଲକ୍ଷ୍ମୀ ତବ ପ୍ରିୟା | ପତିତ ତାରନ୍ତି |
| ପାପମାନଙ୍କୁ ସେ | ହାରୁଅଛୁ ନିତି । |
| ତୁମ୍ଭରି ଚରିତ | ଜନମ-ଲତାର |

ବହୁତବେ ସମର୍ଥ କୁଟୀର ପ୍ରକାର ।
ସବୁବେଳେ ତୁମ୍ଭ ପାଦେ ରହୁ ଭକ୍ତି,
ପ୍ରକାଶୁ ସମ୍ମୁଖେ ମୁଖ ଚନ୍ଦ୍ରାକୃତି ॥
ଆକାଶ ଶରୀର, ଚନ୍ଦ୍ରାର୍କ ନୟନ,
ଦିଗକର୍ଣ୍ଣ, ପୃଥ୍ୱୀ ତୁମ୍ଭର ଚରଣ ॥
ଅଗ୍ନି ମୁଖ, ଇନ୍ଦ୍ର ଭୁଜ, ପାରାବାର
ଉଦର ଅଟଇ ପ୍ରଭୋ ପରାତ୍ପର ।
ଜନ୍ମ ଜରା ମୃତ୍ୟୁ ବାଧାରେ ପୀଡ଼ିତ,
ତେଜୋହୀନ ଲୋକ ତ୍ରିଲୋକ ବିରକ୍ତ ।
ତବ ପାଦ ପଦ୍ମ ରୂପ ନୌକା ପାଇ
ସଂସାର ସମୁଦ୍ର ସହଜେ ତରଇ ॥
ତୁମର ନିବାସ ଏ ବୈକୁଣ୍ଠ ପୁର
ସବୁବେଳେ ସ୍ୱୟଂ ପ୍ରକାଶ ନିର୍ମଳ ॥
ଦୁଃଖ ଲବହୀନ ଆନନ୍ଦ ଆକର,
ଯୋଗି ଜନ ଗମ୍ୟ ସଦା ଉଜ୍ଜ୍ୱଳ ॥
ଲଭିଛୁଁ ହେ ପ୍ରଭୋ ତୁମର ପ୍ରସାଦେ
ଭକ୍ତିଭରେ ନମୁଁ ତୁମ୍ଭ ପାଦ ପଦ୍ମେ ॥

ସନକାଦି ସପ୍ତର୍ଷିମାନଙ୍କର ଏହି ସ୍ତୋତ୍ରରେ ଭଗବାନ୍ ନାରାୟଣ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ପ୍ରସନ୍ନ ହେଲେ । ଋଷିମାନଙ୍କୁ ସଙ୍ଗରେ ନେଇ ଅନ୍ତଃପୁରରେ ପ୍ରବେଶ କଲେ ଏବଂ ଦ୍ୱାରପାଳ ଜୟ ଓ ବିଜୟ ଉପରେ କ୍ରୁଦ୍ଧ ହୋଇ କହିଲେ "ମଦ ମତ୍ତ ଉଚ୍ଚନୀଚ ତାରତମ୍ୟ ଜ୍ଞାନବିହୀନ ତୁମ୍ଭେ ଦୁହେଁ ମୁକ୍ତବର୍ଗରେ ପରିପୂର୍ଣ୍ଣ ମୋର ଏହି ଧାମରେ ରହିବା ଉଚିତ୍ ନୁହେଁ । ତୁମ୍ଭେ ଦୁଇ ଦୁରାତ୍ମା ପୃଥ୍ୱୀରେ ତିନଥର ରାକ୍ଷସ ରୂପେ ଜନ୍ମ ଲାଭ କରିବ, ପରେ ଆସି ଦ୍ୱାରପାଳକ ରୂପେ ରହିବ । ତୁମ୍ଭେମାନେ ମୋର ଦର୍ଶନାର୍ଥୀ ସେବାକୁଳ ଭକ୍ତମାନଙ୍କୁ ଦ୍ୱାରଦେଶରେ ଅବରୁଦ୍ଧ କରି ମହା ଅପରାଧ କରିଅଛ, ଏ ହେତୁ ଦଣ୍ଡ ପାଇବ ।" ଯେମିତି କହିଲେ ଭଗବାନ୍ ସେପରି ଶାପ ଦେଲାମାତ୍ରେ ସେମାନଙ୍କର ଅପୂର୍ବ ତେଜ କୁଆଡ଼େ ଉଭେଇ ଗଲା । ସେ ଦୁହେଁ ଭୂଲୋକରେ କଶ୍ୟପଋଷିଙ୍କର ଭାର୍ଯ୍ୟା ଦିତିଙ୍କ ଗର୍ଭରେ ଜନ୍ମ ଲାଭ କଲେ । ଜୟ ଅଧିକ ବଳଶାଳୀ ଜ୍ୟେଷ୍ଠ ହିରଣ୍ୟକଶିପୁ ରୂପେ ପ୍ରସିଦ୍ଧି ଲାଭ କଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ଷଷ୍ଠ ଖଣ୍ଡେ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟ ବର୍ଣ୍ଣନଂ ନାମ ଚତୁର୍ଥୋଽଧ୍ୟାୟଃ ।



## ପଞ୍ଚମ ଅଧ୍ୟାୟ

ଜୈମିନି—ସେମାନଙ୍କ ଶରୀର କ୍ରମେ କ୍ରମେ ବୃଦ୍ଧିଲାଭ କଲା । ଅଳ୍ପ ଦିନରେ ସେମାନେ ମଧୁକୈଟଭ ପରି ପରମ ପରାକ୍ରମୀ ହୋଇ ଉଠିଲେ । ତାଙ୍କୁ ଦେଖି ଦେବତାମାନଙ୍କର ମଧ୍ୟ ହୃତ୍କମ୍ପ ହେଲା । ସେମାନଙ୍କର ବଳ ଓ ପରାକ୍ରମ ଅପ୍ରତିହତଭାବରେ ବଢ଼ିବାକୁ ଲାଗିଲା । ଅନୁଜ ହିରଣ୍ୟାକ୍ଷ ଗଦା-ଶିକ୍ଷାରେ ପ୍ରବୀଣ ହେଲେ । ତାଙ୍କର ପାଦବିନ୍ୟାସରେ ଭୂପୃଷ୍ଠରେ କମ୍ପ ଜାତ ହେଉଥିଲା । ଗଦାଘାତରେ ପର୍ବତମାନେ ମଧ୍ୟ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଉଥିଲେ । ଦିଗ୍‌ଗଜମାନେ ତାଙ୍କ ପଦାଘାତରେ ପରାଜିତ ଓ ଭୀତତ୍ରସ୍ତ ହୋଇ ଗର୍ବ ପରିହାର କରି ପଶ୍ଚାନ୍ମୁଖ ହୋଇ ଦିଗମାନଙ୍କୁ ପଳାୟନ କରି ଚିରକାଳ ଲୁଚି-ରହି ନିଜନାମ ସାର୍ଥକ କଲେ । ଯୁଦ୍ଧରେ କି ଦେବତା କି ଅସୁର କେହିହେଲେ ମଧ୍ୟ ତାଙ୍କ ସମ୍ମୁଖରେ ଛିଡ଼ା ହୋଇ ପାରିଲେ ନାହିଁ, ମନୁଷ୍ୟ ମାନଙ୍କ କଥା ଛାଡ଼ । ଇନ୍ଦ୍ରାଦି ଦେବତାମାନେ ହିରଣ୍ୟାକ୍ଷଙ୍କର ଦୈନନ୍ଦିନ ଉପଦ୍ରବ ସହ୍ୟ କରି ପାରିଲେ ନାହିଁ, ବ୍ରହ୍ମତେଜ ଉଦ୍ଭାସିତ ସତ୍ୟଲୋକବାସୀ କମଳାସନ ବ୍ରହ୍ମାଙ୍କର ଶରଣାଗତହୋଇ ହିରଣ୍ୟାକ୍ଷଙ୍କର କ୍ରୂର ଚେଷ୍ଟାମାନ ବର୍ଣ୍ଣନାକଲେ । ଦ୍ୱିଜଗଣ, ପଦ୍ମଯୋନି ବିଶ୍ୱପିତା ଚତୁର୍ମୁଖ ବ୍ରହ୍ମା ଇନ୍ଦ୍ରାଦି ଦେବତାମାନଙ୍କର ଦୈନ୍ୟ ଶୁଣି ଚିନ୍ତିତ ହୋଇ ଏକାଗ୍ରଚିତ୍ତରେ ମଧୁରିପୁ ସର୍ବାନ୍ତର୍ଯ୍ୟାମୀ ଷଡ୍‌ଗୁଣ୍ୟପୂର୍ଣ୍ଣ ସର୍ବେଶ୍ୱର ନାରାୟଣଙ୍କୁ ଧ୍ୟାନ କଲେ । ବ୍ରହ୍ମାଙ୍କର ହୃଦୟ କମଳରେ ଅଙ୍ଗୁଷ୍ଠ ମାତ୍ରପୁରୁଷ ରୂପେ ଅବସ୍ଥିତ ଲକ୍ଷ୍ମୀପତି ଦୟାପରବଶ ହୋଇ ଆଶ୍ରିତ ପାପତାପନାଶକ ଯୋଗୀଶ୍ୱରଧ୍ୟାନଗମ୍ୟ ଯଜ୍ଞବରାହ ରୂପ ଧାରଣ କରି ବ୍ରହ୍ମାଙ୍କର ନାସା ରନ୍ଧ୍ରରୁ ଆବିର୍ଭୂତ ହେଲେ । ବରାହମୂର୍ତ୍ତିଙ୍କର ଆବିର୍ଭାବ ମାତ୍ରେ ଋକ୍‌ସାମ ଧ୍ୱନି ଶୁଣାଗଲା । ଦେବତାମାନେ ନାରାୟଣଙ୍କର ଏହିପରି ମୂର୍ତ୍ତି କେବେ ହେଲେ ଦେଖିନଥିଲେ । ଯଜ୍ଞବରାହ ମୂର୍ତ୍ତିର ପାଦରେ ବେଦ, ସନ୍ଧ୍ୟଙ୍ଗରେ ବେଦାଙ୍ଗ, ଗଳାରେ ସ୍ମୃତି-ପୁରାଣେତିହାସ ପୃଷ୍ଠଦେଶରେ ପ୍ରାଗ୍‌ବଂଶ, (ତ୍ରେତା ଯୁଗରେ ଯାଗଶାଳାର

ଏକଭାଗ) ଉଦରରେ ପତ୍ନୀଶାଳ (ଯାଗ ଶାଳାର ପତ୍ନୀଅଧିଷ୍ଠିତ ଭାଗ) ଲେଙ୍ଗରେ ଶମ୍ୟା ଓ ଉତ୍ତର ବେଦ (ଯାଗପାତ୍ର ଓ ଅଗ୍ନିସ୍ଥାନ) କଣ୍ଠରେ ସ୍ରୁକ୍, ମୁଖାଗ୍ରରେ ଧ୍ରୁପସ୍ରୁକ, ରୋମରେ କୁଶକାଶାଦ ବଣବଧ ଦର୍ଭ, ଦନ୍ତରେ ଯାଗଶମ୍ (ପଶୁହନନ-ସାଧନ ଆୟୁଧ), ଜଙ୍ଘାରେ କପାଳ, ଆଖି ପତାରେ ବ୍ୟଜନ, ଜନନେନ୍ଦ୍ରିୟରେ ବେଳ, ମଳ ଦ୍ୱାରରେ ଶିଳା, ମୁଖରେ ଶିଳାପାତ୍ର କର୍ଣ୍ଣରେ କୁଳ, ଚର୍ମରେ କୃଷ୍ଣାଜିନ, ଜିହ୍ୱାରେ, ଆହବନୀୟାଗ୍ନି, ଉଦରରେ ପବସୁ (ଯଜ୍ଞୀୟ ପଶୁର ପାର୍ଶ୍ୱ-ଦେଶସ୍ଥ ହୋମାର୍ହ ମାଂସ ଖଣ୍ଡ) ବିଶିଷ୍ଟ ଯଜ୍ଞବରାହ ସ୍ୱରୂପ ଦେଖି ଚତୁର୍ମୁଖ ବ୍ରହ୍ମା ବିସ୍ମିତ ହୋଇ ବିଷ୍ଣୁଙ୍କର ଯଜ୍ଞବରାହମୂର୍ତ୍ତିକି ସ୍ତୁତି କରି ପ୍ରସନ୍ନ କଲେ । ବ୍ରହ୍ମା କହିଲେ—ହେ ଆଶ୍ରିତବତ୍ସଳ, ଋକ୍, ଯଜୁ, ସାମ, ଅଥର୍ବ ରୂପ ଚାରି ବେଦ, ଶିକ୍ଷା, ବ୍ୟାକରଣ, ଛନ୍ଦ, ନିରୁକ୍ତ, ଜ୍ୟୋତିଷ ଓ କଳ୍ପ-ରୂପ ଛଅଟି ବେଦାଙ୍ଗ, ଆପଣଙ୍କର ସ୍ୱରୂପରେ ପ୍ରକାଶ ପାଉଅଛନ୍ତି, ସପ୍ତଦଶ ପ୍ରଜାପତି ମଧ୍ୟ ଆପଣଙ୍କର ସ୍ୱରୂପ । ଆପଣ ଯାଗ ସ୍ୱରୂପ ହୋଇ ଯାଗ ଫଳ ପ୍ରଦାନ କରନ୍ତି । ଆପଣ ଯଜ୍ଞା-ଯୁଧ, ସ୍ରୁବ, ସ୍ରୁକ୍, ଯୂପ, ବର୍ହି, ପୁରୋଡ଼ାଶ, ହବି—ଏ ସମସ୍ତ ଆପଣଙ୍କର ରୂପାନ୍ତର ମାତ୍ର । ରାକ୍ଷସ ବୀର ହିରଣ୍ୟାକ୍ଷ ଆମ୍ଭମାନଙ୍କୁ ବିଶେଷ ପୀଡ଼ା ଦେଉଅଛି । ପର୍ବତମାଳା ବିଶିଷ୍ଟ ପୃଥିବୀ ରସାତଳରେ ବୁଡ଼ିଗଲାଣି । ଅତଏବ ଆପଣ ଏହି ଦୁଷ୍ଟ ରାକ୍ଷସକୁ ହତ୍ୟା କରି ଏହି ଜୀବ ଜଗତକୁ ରକ୍ଷା କରନ୍ତୁ । ଆପଣ ଏଥିପୂର୍ବେ ମହାକଚ୍ଛପ ରୂପ ସ୍ୱୀକାର କରି ମାଳୟ ପର୍ବତକୁ ପୃଷ୍ଠରେ ବହନ କରି ଆଶ୍ରିତ-ମାନଙ୍କର ଦୁଃଖ ହରଣ କରି ଅଛନ୍ତି । ଅସୁରମାନଙ୍କୁ ବିମୋହିତ କରି ମହାଲକ୍ଷ୍ମୀଙ୍କୁ ବିବାହ କରି ଦେବତାମାନଙ୍କୁ ଅମୃତ ପରିବେଷଣ କରି ଅଛନ୍ତି । ଜୈମିନି କହିଲେ । ଏପରି ବ୍ରହ୍ମା ସ୍ତୁତି କଲାପରେ ଯଜ୍ଞ ବରାହରୂପୀ ମହାବିଷ୍ଣୁ ଇନ୍ଦ୍ରାଦି ଦେବତାମାନଙ୍କ ସମକ୍ଷରେ ମେରୁ ପର୍ବତ ପରି ବିଶାଳ ହୋଇ ବଢ଼ିବାକୁ ଲାଗିଲେ । ବଜ୍ରନାଦ ପରି ଭୟଙ୍କର ନାଦରେ ସ୍ୱର୍ଗ ଓ ଭୂମିଭାଗ ବିଦୀର୍ଣ୍ଣ କରି ରସାତଳରେ ପ୍ରବେଶ କଲେ । ସେଠାରେ ମେରୁ ମନ୍ଦର ପରି ଦୃଢ଼ ଶରୀରଧାରୀ ଭୟଙ୍କର ଯଜ୍ଞ ବରାହଙ୍କର ମୂର୍ତ୍ତି ଦେଖି ହିରଣ୍ୟାକ୍ଷ ଗାତ୍ର କମ୍ପନକରି ଗଦା ବୁଲାଇ ଗର୍ଜି ଉଠିଲେ । ଯଜ୍ଞବରାହ ରୂପୀ ମହାବିଷ୍ଣୁ ସେହି ଦୈତ୍ୟର କ୍ରୂର ସ୍ୱରୂପ ଦେଖି ମତ୍ତଗଜ ପରି ସାବଲୀଳକ୍ରମେ ସମ୍ମୁଖରେ ଠିଆ ହେଲେ । ସେହି ରାକ୍ଷସ ବରାହଙ୍କୁ ମାରିବା ଉଦ୍ଦେଶ୍ୟରେ ନିଜର ବିଶାଳ ଗଦାକୁ ଘୂରିଆଡ଼େ ବୁଲାଇ ଯଜ୍ଞବରାହଙ୍କର ସମ୍ମୁଖକୁ ଧାଇଁଲେ । ବିଷ୍ଣୁ ମହାକୋପରେ ରାକ୍ଷସର ବକ୍ଷରେ ନିଜ ହସ୍ତ ଦେଇ ରାକ୍ଷସକୁ ଅବରୁଦ୍ଧ କଲେ । ଅବରୁଦ୍ଧ

ରାକ୍ଷସ ତଳେ ପଡ଼ିଗଲା ମାତ୍ରେ ଉଠି ବରାହ ମୂର୍ତ୍ତି ବିଷ୍ଣୁଙ୍କର ମସ୍ତକରେ ପ୍ରଚଣ୍ଡ ଗଦାଘାତ କଲା । ଯଜ୍ଞବରାହ ସେହି ଦୈତ୍ୟର ଆକ୍ରମଣ ଅତି କୌଶଳରେ ଉପେକ୍ଷା କରି ବଜ୍ରସମାନ ନିଜ ଦଂଷ୍ଟ୍ରାରେ ହିରଣ୍ୟାକ୍ଷର ଉଦର ବିଦୀର୍ଣ୍ଣ କଲେ । ଏପରି ଭାବେ ବରାହ ମୂର୍ତ୍ତିଙ୍କର ତୀକ୍ଷ୍ଣଦଂଷ୍ଟ୍ରାଘାତରେ ହିରଣ୍ୟାକ୍ଷର ଉଦର ବିଦୀର୍ଣ୍ଣ ହୋଇଗଲା । ସେ ବଜ୍ରାହତ ପର୍ବତ ପରି ଭୂମି-ତଳେ ପଡ଼ି ପ୍ରାଣ ବିସର୍ଜନ କଲା । ରସାତଳରେ ନିମଗ୍ନ ପୃଥିବୀକୁ ଗୋବର୍ଦ୍ଧନ-ଧାରୀ ଶ୍ରୀପତି ନିମିଷ ମାତ୍ରେ ନିଜ ଦଂଷ୍ଟ୍ରାଗ୍ରରେ ସାବଲୀଳକ୍ରମେ ଉଠାଇଲେ । ଆଶ୍ରିତବତ୍ସଳ ସର୍ବେଶ୍ୱର ଲୋକକଣ୍ଟକ ହିରଣ୍ୟାକ୍ଷକୁ ସଂହାର କରି ଦେବତା-ମାନଙ୍କର ଭୟ ଦୂର କଲେ । ଦେବତାମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ମୁନିଗଣ ଯଜ୍ଞବରାହରୂପୀ ମହାବିଷ୍ଣୁ ହିରଣ୍ୟାକ୍ଷକୁ କିପରି ସଂହାର କରି ଭୂମିକୁ ଉଦ୍ଧାର କଲେ—ଆପଣମାନଙ୍କୁ କହିଲି । ଯେଉଁ ଲୋକ ଯଜ୍ଞବରାହରୂପୀ ଭଗବାନଙ୍କର ଚରିତ ଶ୍ରଦ୍ଧା ଭକ୍ତିପୂର୍ବକ ପଢ଼ିବେ ଶୁଣିବେ, ସେମାନେ ସମସ୍ତ ପାପ ବିମୁକ୍ତ ହୋଇ ନିତ୍ୟସ୍ଥାନ ଲାଭ କରିବେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ଶ୍ରୀ ସିଂହାଚଳ କ୍ଷେତ୍ର-ମାହାତ୍ମ୍ୟେ ହିରଣ୍ୟାକ୍ଷ ସଂହାରୋ ନାମ ପଞ୍ଚମୋଽଧ୍ୟାୟଃ ।

—୦—

# ଷଷ୍ଠ ଅଧ୍ୟାୟ

ଜୈମିନ—ହିରଣ୍ୟକଶିପୁ ପଞ୍ଚବରାହରୂପୀ ବିଷ୍ଣୁଙ୍କ ଦ୍ୱାରା ନିଜ ଭାଇର ନିଧନବାର୍ତ୍ତା ଶୁଣି ବିଶେଷ ଦୁଃଖିତ ହେଲେ । ମାତାପୋଢ଼ ସମ୍ବନ୍ଧ ଗୁରୁ ଶୋକ ସହି ନପାରି ମିୃୟମାଣ ହେଲେ । ବନ୍ଧୁ ପରିବାର ପ୍ରଭୃତି ଦୈତ୍ୟ-ଦାନବମାନେ ବିଶେଷ ବିଗ୍ରହଗ୍ରସ୍ତ ହେଲେ । ଦୁଃଖଦଗ୍ଧା ମା ଓ ଭ୍ରାତୃ ପତ୍ନୀଙ୍କୁ ଆଶ୍ୱାସନା ଦେଇ ହିରଣ୍ୟକଶିପୁ ଭାଇଙ୍କର ଅନ୍ତ୍ୟେଷ୍ଟିକର୍ମ ସମ୍ପନ୍ନ କଲେ । ପରେ ମନ୍ତ୍ରୀ, ସାମନ୍ତ-ପରିବାରବର୍ଗଙ୍କୁ ଏକତ୍ରିତ କରି କହିଲେ—ଦୈତ୍ୟମାନଙ୍କର ପରାଜୟର କାରଣ ବଳ ନାହିଁ । କେବଳ ତପୋବଳ ବିଜୟର ପ୍ରଧାନ କାରଣ । ମୁଁ ଅନନ୍ୟ ସାଧାରଣ ତପସ୍ୟା କରି ଚତୁର୍ମୁଖ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ଅନନ୍ୟ ଦୁର୍ଲଭ ତପୋବଳ ସମ୍ପାଦନ କରିବି । ଏପରି କହି ରାଜ୍ୟଭାର ସେମାନଙ୍କ ହସ୍ତରେ ବିନ୍ୟସ୍ତ କରି ସମସ୍ତ ସୁଖ ବିଳାସ ବର୍ଜନ କରି ତପୋବନକୁ ପ୍ରସ୍ଥାନ କଲେ । ରାକ୍ଷସ ବୀର ବିନ୍ଧ୍ୟ ପର୍ବତର ବିଜନ ପ୍ରାନ୍ତର ପ୍ରଦେଶରେ କନ୍ଦମୂଳ-ଫଳାଶୀ ମୁନିମାନଙ୍କର ବ୍ରତ ଅବଲମ୍ବନ କରି ବସନ୍ତ ଓ ଗ୍ରୀଷ୍ମ ଋତୁରେ ପଞ୍ଚାଗ୍ନି-ମଧ୍ୟରେ ହେମନ୍ତ ଶିଶିର ଋତୁରେ ନଦୀ ଜଳରେ ଆକଣ୍ଠ ବୁଡ଼ି ରହି ଧୈର୍ଯ୍ୟ ସହକାରେ ଜିତେନ୍ଦ୍ରିୟ ହୋଇ ଗ୍ରୀଷ୍ମ କାଳରେ ଆହାର ପରିତ୍ୟାଗ କରି ବର୍ଷା ଓ ଶୀତ ଋତୁରେ ଜଳ ମାତ୍ର ଆହାର କରି ଶରୀର କଷ୍ଟ ପ୍ରତି ଭ୍ରୂକ୍ଷେପ ନ କରି ଅସାଧ୍ୟ ତପସ୍ୟା କରିବାକୁ ଲାଗିଲେ । ବିପ୍ରଗଣ, ହିରଣ୍ୟକଶିପୁ ଏହିପରି ଦଶ ସହସ୍ର ବର୍ଷ ଏକାଗ୍ର ଚିତ୍ତରେ ତପସ୍ୟା କଲେ । ଦେବେନ୍ଦ୍ର ରାକ୍ଷସର ଘୋର ତପସ୍ୟା ଦେଖି ପ୍ରମାଦ ଗଣିଲେ ଏବଂ ତପ ଭଗ୍ନ କରିବା ଉଦ୍ଦେଶ୍ୟରେ କାମ, ବସନ୍ତ, ମଳୟ ମାରୁତ ଓ ଅପ୍ସରମାନଙ୍କୁ ପଠାଇଲେ । ସେମାନେ ସେହି ରାକ୍ଷସର ତପୋବନରେ ପ୍ରବେଶ କରି ସମସ୍ତ ତପୋବନକୁ ଶୃଙ୍ଗାରମୟ କଲେ । ଦେବଗଣିକାମାନଙ୍କର ହାବ-ଭାବ-ବିଳାସ ପରିପୂର୍ଣ୍ଣ ନୃତ୍ୟ ଓ ଗାନରେ ସେ ତପୋବନ ଉଚ୍ଛୁଳି ପଡ଼ିଲା । ଦୈତ୍ୟରାଜ ସେ ସମସ୍ତ ଚେଷ୍ଟା ବାରମ୍ବାର ଦେଖି ମଧ୍ୟ କୌଣସି ମାନସିକ ବିକାର ପ୍ରକାଶ ନ କରି ନିଶ୍ଚଳ ରହିଲେ । ସେମାନେ ଲଜ୍ଜିତ ହୋଇ କାଳେ ଶାପ ଦେବେ ବୋଲି ଭୟରେ ନିଜର ସମସ୍ତ ପ୍ରଯତ୍ନ ପରିତ୍ୟାଗ କରି ସ୍ୱର୍ଗକୁ ଫେରିଗଲେ । ନିରାଶ ହୋଇ ବସନ୍ତାଦି ଫେରିଗଲା ପରେ ଦୈତ୍ୟରାଜ ହିରଣ୍ୟକଶିପୁ ପାଦାଙ୍ଗୁଷ୍ଠ ମାତ୍ରରେ ଭୂମି ଉପରେ ରହି ହାତ ଦୁଇଟି ଯୋଡ଼ି ଏକ ପ୍ରକାର ନିରାଧାର ଭାବେ ଅବସ୍ଥାନ କରି ଆହାର ପରିତ୍ୟାଗ କରି ଦାରୁଣ ତପସ୍ୟା କଲେ । ତାଙ୍କର ଶରୀର ରକ୍ତ,

ମାଂସ, ବସା, ଚର୍ମ ଶୁଷ୍କ ହେଲା, ଶରୀର ଅସ୍ଥି ପଞ୍ଜରମାତ୍ର ବଶିଷ୍ଟ ହେଲା । ଭୂତ ପ୍ରେତ ପିଶାଚ ବେଷ୍ଟିତ ପ୍ରେତରାଜ ପରି ଅତ୍ୟନ୍ତ ଭୟଙ୍କର ଦେଖାଗଲା । ସେ ଶାଖାଶୂନ୍ୟ ବୃକ୍ଷ ପରି ଅବସ୍ଥାନ କରି ଏକ ହଜାର ବର୍ଷ ପର୍ଯ୍ୟନ୍ତ ତପସ୍ୟା କଲେ । ତାଙ୍କର ତପୋଽଗ୍ନି ପ୍ରବଳ ହେଲା । ଅଗ୍ନିକଣା ଓ ଧୂମ ତ୍ରିଲୋକପାଳ ବ୍ୟାପିଗଲା । ଦେବତାମାନେ ସ୍ୱର୍ଗ ପରିତ୍ୟାଗ କରି ସତ୍ୟ ଲୋକରେ ଉପସ୍ଥିତ ହୋଇ ଚତୁର୍ମୁଖ ବ୍ରହ୍ମାଙ୍କର ପାଦପଦ୍ମରେ ସାଷ୍ଟାଙ୍ଗ ପ୍ରଣିପାତ କରି ପ୍ରାର୍ଥନା କଲେ । ସୁରଜ୍ୟେଷ୍ଠ ବ୍ରହ୍ମା ସେମାନଙ୍କର ଆଗମନର କାରଣ ପଚାରିଲେ । ଦେବତାମାନେ ଦେବେନ୍ଦ୍ରଙ୍କୁ ଆଗେ କରି ନିଜ ନିଜ କଷ୍ଟ ଜଣାଇଲେ । ସେମାନେ କହିଲେ—

ସୁରଜ୍ୟେଷ୍ଠ ହିରଣ୍ୟକଶିପୁ ଦାରୁଣ ତପସ୍ୟା କରୁଅଛି । ସେ ଭୟରେ ଆମ୍ଭେମାନେ ଆପଣଙ୍କର ଶରଣାଗତ ହୋଇଅଛୁଁ । ତାର ଉଗ୍ର ତପସ୍ୟାରେ ଆମ୍ଭମାନଙ୍କର ମନରେ କି ଭୟ ଜାତ ହୋଇଛି ଏବଂ ସେ ବର ପାଇଲା ପରେ ଆମ୍ଭମାନଙ୍କୁ କି ବାଧା ଦେବ-ତାହା କହିହେବ ନାହିଁ । ଆପଣ ସେଠାକୁ ଶୀଘ୍ର ବିଜେ କରି ତାର ତପସ୍ୟାର ଅନୁରୂପ ବର ପ୍ରଦାନ କରି ତପ ବନ୍ଦ କରନ୍ତୁ । ସୁରେଶ୍ୱର, ଆପଣ କାଳକ୍ଷେପ କଲେ ତାର ତପୋଽଗ୍ନିରେ ତ୍ରିଲୋକ ଭସ୍ମ ହୋଇଯିବ । ଏଥିରେ କିଛି ହେଲେ ସନ୍ଦେହ ନାହିଁ । ଦେବତାମାନଙ୍କର ପ୍ରାର୍ଥନା ଶୁଣି ହଂସବାହନ ବ୍ରହ୍ମା ହିରଣ୍ୟକଶିପୁର ତପୋବନକୁ ଯାଇ ଓ ତାର ତପସ୍ୟା ଦେଖି ଦେବତାମାନଙ୍କୁ କହିଲେ—ଦେବଗଣ, ପୂର୍ବରେ ଏହିପରି ତପସ୍ୟା କେହି କେବେ କରି ନାହାନ୍ତି । କି ଭୟଙ୍କର କଠିନ ତପସ୍ୟା ! ଅସ୍ଥି ପଞ୍ଜରମାତ୍ର ବଶିଷ୍ଟ ହେଲେ ମଧ୍ୟ ଏ ହିରଣ୍ୟକଶିପୁର କି ଧୈର୍ଯ୍ୟ ଓ ନିଶ୍ଚଳତା ଅବଲମ୍ବନ କରି ମନ ଆକର୍ଷଣ କରୁଅଛି ! ଚତୁର୍ମୁଖ ବ୍ରହ୍ମା ସେମନ କହି ଦୟାର୍ଦ୍ର ହୃଦୟ ହୋଇ କମଣ୍ଡଳୁରୁ ଜଳ ତା ଉପରେ ସ୍ୱହସ୍ତରେ ଆଞ୍ଜିଲେ । ସୃଷ୍ଟିକର୍ତ୍ତା ସୁରଜ୍ୟେ ବ୍ରହ୍ମାଙ୍କର କରସ୍ପର୍ଶ ମାତ୍ରେ ତାରୁଣ୍ୟପୂର୍ଣ୍ଣ ବଜ୍ରସମାନ ଶରୀର ଲାଭ କରି ସମ୍ମୁଖରେ ହଂସବାହନ ସ୍ମିତମୁଖ ପଦ୍ମାସନଙ୍କୁ ଦେଖି ପ୍ରଦକ୍ଷିଣ କରି ବିନମ୍ର ସହକାରେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ବ୍ରହ୍ମା କହିଲେ "ଦିତିନନ୍ଦନ, ତୁମ୍ଭେ ତପ ଉପସଂହାର କରି ଶୀଘ୍ର ତୁମ୍ଭର ଅଭିଳଷିତ ବର ଗ୍ରହଣ କର ।" ବ୍ରହ୍ମାଙ୍କର ସେପରି ନିର୍ଦ୍ଦେଶ ଶୁଣି ଦେବତାମାନେ ଭୟ ଓ ଅନୁମାନରେ କିଛୁବୁଦ୍ଧ ହେଲେ । ଦୈତ୍ୟରାଜ ହିରଣ-କଶିପୁ ବ୍ରହ୍ମାଙ୍କୁ କହିଲେ— "ଦେବଦେବ, ଆପଣ ଯଦି ମୋର ତପଃର ପ୍ରୀତ ହୋଇ ଅଛନ୍ତି, ତେବେ

ଏପରି ବର ଦିଅନ୍ତୁ ଯେପରି ଆପଣଙ୍କର ସୃଷ୍ଟ କୌଣସି ପ୍ରାଣୀ ମୋତେ ମାରି ପାରିବ ନାହିଁ । କୌଣସି ଅସ୍ତ୍ର ଶସ୍ତ୍ର, ବୃକ୍ଷ ପର୍ବତ ବାଣ ମୋର ଶରୀରକୁ କ୍ଷତ କରି ପାରିବ ନାହିଁ । ଭୂମିରେ ପାତାଳରେ ବା ଆକାଶରେ ମୋତେ କେହି ମାରି ପାରିବେ ନାହିଁ । ଆପଣଙ୍କର ସୃଷ୍ଟ କୌଣସି ପ୍ରାଣୀ ଯୁଦ୍ଧରେ ମୋର ସମ କକ୍ଷ ହେବ ନାହିଁ ଋଷି ଭୃଗୁଙ୍କର ଶାପ ମଧ୍ୟ ମୋର କୌଣସି ଅନିଷ୍ଟ କରି ପାରିବ ନାହିଁ । ଦିକ୍‌ପାଳମାନେ ମଧ୍ୟ ମୋର ସମକକ୍ଷ ହେବେ ନାହିଁ । ଲୋକେଶ ! ଆପଣ ସେହିପରି ବର ପ୍ରଦାନ କରନ୍ତୁ । ଏହା ଛଡ଼ା ମୋର ଅନ୍ୟ କୌଣସି ଅଭିଳାଷ ନାହିଁ । ଜୈମିନି କହିଲେ— । ରାକ୍ଷସରାଜର ଯେପରି ବର ପ୍ରାର୍ଥନା ଶୁଣି ଦେବତାମାନେ ମନରେ ଜଳି ଉଠିଲେ । ବ୍ରହ୍ମା କହିଲେ— ରାକ୍ଷସରାଜ ! ଏହା ପୂର୍ବରୁ କୌଣସି ଲୋକ ଏପରି କଠୋର ତପରେ ମୋତେ ଆରାଧନା କରିନାହିଁ, ତୁମ୍ଭର ସମସ୍ତ ପ୍ରାର୍ଥନା ପୂର୍ଣ୍ଣ ହେଉ । ମୋର ଏହି ବର ଗ୍ରହଣ କର । ରାକ୍ଷସମାନଙ୍କ ଦ୍ୱାରା ସେବିତ ହୋଇ ଦେବତା ଓ ଦାନବମାନଙ୍କର ଅଜେୟ ହୋଇ ମୋର ବର ଅନୁଭବ କର । କାଶ୍ୟପ ବଂଶୋଦ୍ଭବ ! ଦେବତା, ବ୍ରାହ୍ମଣ, ପତିବ୍ରତା—ଏମାନଙ୍କୁ ବାଧା ଦିଅ ନାହିଁ । ସେମାନଙ୍କୁ ପୀଡ଼ା ଦେଲେ ମୋର ବର ଚିରକାଳ କାର୍ଯ୍ୟକାରୀ ହେବନାହିଁ ।” ଏପରି ହିରଣ୍ୟକଶିପୁକୁ ନିର୍ଦ୍ଦେଶ ଦେଇ ଦେବତାମାନଙ୍କ ସହିତ ସ୍ୱର୍ଗକୁ ଯାଇ ଓ ଇନ୍ଦ୍ରଙ୍କୁ ବୁଝାଇ ନିଜେ ସତ୍ୟ ଲୋକକୁ ପ୍ରସ୍ଥାନ କଲେ । ଦେବତାମାନେ କେତେବେଳେ ସେ ରାକ୍ଷସ ଯୁଦ୍ଧଯାତ୍ରାରେ ଆସି ବାଧା ଦେବବୋଲି ଅନୁମାନଗ୍ରସ୍ତ ହୋଇ ତାର ମାର୍ଗ ନିରୀକ୍ଷଣ କରି ଦୁଃଖରେ କାଳ ଯାପନ କରିବାକୁ ଲାଗିଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବୈଷ୍ଣବଖଣ୍ଡେ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟେ ହିରଣ୍ୟ କଶିପୁ ବର ପ୍ରାପ୍ତି ର୍ନାମ ଷଷ୍ଠୋଽଧ୍ୟାୟଃ ।



# ସପ୍ତମ ଅଧ୍ୟାୟ

ଜୈମିନି—ରାକ୍ଷସରାଜା ହିରଣ୍ୟକଶିପୁ ବର ଲାଭ କରି ଦେବଦାନବମାନଙ୍କର ଅଜେୟ ହୋଇ ହିରଣ୍ୟପୁରରେ ନିଜ ରାଜଧାନୀ ସ୍ଥାପନ କରି ଦେବେନ୍ଦ୍ର ପରି ତିନିଲୋକ ଶାସନ କରିବାକୁ ଲାଗିଲେ । ବର ଲାଭ କରି ଦେବତାମାନଙ୍କର ଅଜେୟ ଦୈତ୍ୟରାଜ୍ୟରେ ଅଭିଷିକ୍ତ, ହିରଣ୍ୟକଶିପୁଙ୍କ ସମୀପରେ ଦୈତ୍ୟ, ଦାନବ ଓ ରାକ୍ଷସମାନେ ସପରିବାର ଶତ, ସହସ୍ର ଓ ଲକ୍ଷ ସଂଖ୍ୟାରେ ଉପସ୍ଥିତ ହେଲେ । ସେ ସମସ୍ତେ ରାକ୍ଷସରାଜଙ୍କର ଅପରିସୀମ ଶକ୍ତି ଦେଖି ପୂର୍ବ ଶତ୍ରୁତା ସ୍ମରଣ କରି ବିପ୍ରଜିତ୍ ନାମକ ମନ୍ତ୍ରୀଙ୍କର ଅଧିକାପୁକର୍ତ୍ତ୍ୱର ଦେବତାମାନଙ୍କ ସହ ଯୁଦ୍ଧ ଘୋଷଣା କଲେ । ଅସଂଖ୍ୟ ଆୟୁଧଧାରୀ ରାକ୍ଷସସଂଘ ପରିବେଷ୍ଟିତ ହୋଇ ଦୈତ୍ୟରାଜ ସ୍ୱର୍ଗଜୟ କରିବା ଉଦ୍ଦେଶ୍ୟରେ ନାନା ଅଳଙ୍କାରରେ ଅଳଂକୃତ, ଅତ୍ୟୁଚ୍ଚ ସ୍ୱର୍ଣ୍ଣମୟ ପତାକାରେ ବିଭୂଷିତ, ଅସଂଖ୍ୟ ନାନାବିଧ ଅସ୍ତ୍ରଶସ୍ତ୍ର ପରିପୂର୍ଣ୍ଣ, ସହସ୍ର ଘୋଟକରେ ଯୋଜିତ ହେବା ହେତୁ ଅତି ଶୀଘ୍ରଗାମୀ, ଅଗ୍ନିପରି ଦେଦୀପ୍ୟମାନ ମେରୁ ଶିଖର ପରି ଅତ୍ୟୁଚ୍ଚ, ରଥ ଆରୋହଣ କରି ଚତୁରଙ୍ଗବଳସମନ୍ୱିତ ହୋଇ ସ୍ୱର୍ଗ ନିକଟରେ ଉପସ୍ଥିତ ହେଲେ । ଇନ୍ଦ୍ରାଦି ଦେବତାମାନେ ରାକ୍ଷସରାଜାଙ୍କର ଆକ୍ରମଣ ଦେଖି ଓ ତାଙ୍କର ପରାକ୍ରମ ଜାଣି ଯୁଦ୍ଧ ସେମାନଙ୍କର ପ୍ରତିରୋଧ କରିବା ସକାଶେ ବିପୁଳ ଆୟୋଜନ କଲେ । ବୃତ୍ରହନ୍ତା ଦେବେନ୍ଦ୍ର ମରୁଦ୍‌ଗଣ ସହିତ ବଜ୍ର ହସ୍ତରେ ଐରାବତ ଆରୋହଣ କରି ଦୈତ୍ୟମାନଙ୍କର ସମ୍ମୁଖରେ ଉପସ୍ଥିତ ହେଲେ । କ୍ରମେ କ୍ରମେ ପରସ୍ପର ଜୟ ଉଦ୍ଦେଶ୍ୟରେ ଦୈତ୍ୟ ଓ ଦେବତାମାନଙ୍କ ମଧ୍ୟରେ କଠିନ ଅସ୍ତ୍ରଶସ୍ତ୍ର ଯୁଦ୍ଧ ଘନ ହୋଇ ଉଠିଲା । ଇନ୍ଦ୍ର ବଜ୍ର ଆୟୁଧରେ, ଯମ କାଳ ଦଣ୍ଡରେ, କୁବେର ଗଦାରେ, ବରୁଣ ପାଶରେ କୋପାବିଷ୍ଟ ହୋଇ ଯୁଦ୍ଧକରି; ଅନେକ ରାକ୍ଷସ ବଧ କଲେ । ଆଦିତ୍ୟ, ବସୁ, ରୁଦ୍ର, କିନ୍ନର, ଉରଗ ପ୍ରଭୃତି ଦେବଗଣ ପ୍ରବଳ ପରାକ୍ରମ ଅନେକ ରାକ୍ଷସଙ୍କୁ ଧରାଶାୟୀ କଲେ । ଏହିପରି ଦେବତାମାନଙ୍କ ଦ୍ୱାରା ହଜାର ହଜାର ରାକ୍ଷସ ହତ ହେବା ଦେଖି ଦୈତ୍ୟରାଜ ଦର୍ପପୂର୍ଣ୍ଣ ହିରଣ୍ୟକଶିପୁ ଖଡ୍ଗହସ୍ତ ପଳାୟମାନ ଦୈତ୍ୟ ସୈନିକମାନଙ୍କୁ ଆଶ୍ୱାସନା ଦେଇ ନିଜ ରଥରେ ଆରୋହଣ କରି ଅଖଣ୍ଡ ଜୟଶାଳୀ ଦେବ-ସେନା ମଧ୍ୟରେ ପ୍ରବେଶ କରି ସମୁଦ୍ରକୁ ପ୍ରଳୟାଗ୍ନି ଧ୍ୱସ୍ତ କଲା ପରି ବିଜୟୀ ସେନାରୂପେ ମହାସମୁଦ୍ରକୁ ମନ୍ଥନ କରିବାକୁ ଲାଗିଲେ । ହିରଣ୍ୟକଶିପୁଙ୍କର ବାହୁବଳରେ ପ୍ରୋତ୍ସାହିତ ହୋଇ, ତାଙ୍କର ମନ୍ତ୍ରୀ ପ୍ରଭୃତି ପରିକରବର୍ଗ

ଶୂଳ, ଖଡ୍ଗ, ପରଶୁ, ମୁଷଳ, ଗଦା ପ୍ରଭୃତି ଆୟୁଧ ସାହାଯ୍ୟରେ ଦେବତା ମାନଙ୍କୁ ଆକ୍ରମଣ କରି ଦେବତାମାନଙ୍କୁ ଅସ୍ତବ୍ୟସ୍ତ କରିଦେଲେ । ମାଂସଭୋଜୀ ସେହି ରାକ୍ଷସ ସୈନିକମାନଙ୍କ ଦ୍ୱାରା ଆକ୍ରାନ୍ତ ଦେବତାମାନେ ରଣୋତ୍ସାହ ପରିତ୍ୟାଗ କରି ପୃଷ୍ଠଭଙ୍ଗ ଦେବାକୁ ଲାଗିଲେ । ଦୈତ୍ୟରାଜ ହିରଣ୍ୟକଶିପୁ ପଳାୟମାନ ଦେବ ସେନାକୁ ସିଂହ ମୃଗମାନଙ୍କୁ ବଧ କଲାପରି ସଂହାର କରି କରି ଐରାବତାରୂଢ଼ ଇନ୍ଦ୍ରଙ୍କ ପ୍ରତି କ୍ରୂର ଦୃଷ୍ଟି ନିକ୍ଷେପ କଲେ । କୋପରେ ଆରକ୍ତ ନେତ୍ର ପ୍ରବଳପରାକ୍ରମୀ ହିରଣ୍ୟକଶିପୁ ଇନ୍ଦ୍ରଙ୍କୁ ଦେଖି ଯୂଥପତି ଯୂଥପତିକୁ ଆକ୍ରମଣ କଲାପରି ଇନ୍ଦ୍ରଙ୍କୁ ଆକ୍ରମଣ କଲେ । ବୃତ୍ରହନ୍ତା ଇନ୍ଦ୍ର ମଧ୍ୟ ଆକ୍ରମଣ କାରୀ ଦୈତ୍ୟରାଜକୁ ଜୟ କରିବା ଉଦ୍ଦେଶ୍ୟରେ ବଜ୍ରଧରି ପ୍ରତିରୋଧ କଲେ । ସମବଳ ଅସୁରରାଜ ଓ ସୁରରାଜ ମଧ୍ୟରେ ସୁତୀକ୍ଷ୍ଣ ନାନାବିଧ ଆୟୁଧ ସାହାଯ୍ୟରେ ଭୀଷଣ ସଂଗ୍ରାମ ଚାଲିଲା । ଇନ୍ଦ୍ର ସୁବିଧା ଦେଖି ବଜ୍ରାୟୁଧରେ ଦୈତ୍ୟରାଜର ରଥ ଓ ମନୋବେଗୀ ଅଶ୍ୱମାନଙ୍କୁ ଧ୍ୱସ୍ତ କଲେ । ଦୈତ୍ୟରାଜ ନିଜର ରଥ ଓ ଅଶ୍ୱ ଧ୍ୱସ୍ତ ହେବା ଦେଖି କାଳାନ୍ତକ ପରି ଭୟଙ୍କର କ୍ରୋଧ ପ୍ରକାଶ କରି ନିଜକୁ ଅପମାନିତ ମନେକଲେ ଓ ଶକ୍ତି ଆୟୁଧରେ ଇନ୍ଦ୍ରଙ୍କୁ ପ୍ରହାର କରି ଐରାବତ ମସ୍ତକ ଉପରେ ଗଦାରେ ଆଘାତ କଲେ । କୈଳାଶ ଶିଖରପରି ଉନ୍ନତ ନାଗରାଜ ନିଜ ମସ୍ତକର ଗଦାଘାତ ସହି ନ ପାରି ରକ୍ତବାନ୍ତି କରି ଭୟତ୍ରସୂଚକ ଚୀତ୍କାର ଗର୍ଜନ କରି ଇନ୍ଦ୍ରଙ୍କୁ ଧରି ଭୟରେ ପଳାୟନ କଲା । ରଣାଙ୍ଗନରେ ଇନ୍ଦ୍ରଙ୍କର ତାଦୃଶ ଶୋଚନୀୟ ଅବସ୍ଥା ଦେଖି କୁବେରାଦି ଦିକ୍ପାଳମାନେ ନିଜନିଜ ସୈନିକମାନଙ୍କୁ ଏକମୁଖୀ କରି ନିଜ ନିଜ ଆୟୁଧରେ ରାକ୍ଷସରାଜଙ୍କୁ ପ୍ରହାର କଲେ । ସମସ୍ତ ସୁରମାନଙ୍କ ଦ୍ୱାରା ଚାରିଆଡ଼େ ଆକ୍ରାନ୍ତ ହେଲେମଧ୍ୟ ତିଳେ ମାତ୍ର ବିଚଳିତ ନ ହୋଇ ହିରଣ୍ୟକଶିପୁ ଅତ୍ୟନ୍ତ ବେଗରେ ନିଜର ବିବିଧାସ୍ତ୍ର ପ୍ରୟୋଗ କୌଶଳ ପ୍ରକାଶ କରି ଦେବତାମାନଙ୍କୁ ବ୍ୟତିବ୍ୟସ୍ତ କରି ନାନା ପ୍ରକାର ଆୟୁଧ ନିକ୍ଷେପ କଲେ । ତ୍ରିଶୂଳରେ ଯମଙ୍କର ଦଣ୍ଡ ଖଡ୍ଗରେ ବରୁଣଙ୍କର ପାଶ, ଗଦାରେ କୁବେରଙ୍କର ଗଦା ଛିନ୍ନ କଲେ । ରାକ୍ଷସରାଜ ଏହିପରି ଦିଗ୍ପାଳମାନଙ୍କୁ ଶାସ୍ତ୍ରବିରହିତ କରିଦେଲେ । କୁବେର ଯମ ଓ ବରୁଣ ତାଙ୍କର ଆଗରେ ରହି ନପାରି ଇନ୍ଦ୍ରଙ୍କର ଗତି ଅନୁସରଣକଲେ । ଦେବତାମାନେ ଏପରି ପରାଜିତ ହୋଇ ସ୍ୱର୍ଗ ତ୍ୟାଗକରି ଭୂତଳରେ ଆଶ୍ରୟ ନେଲେ । ବଡ଼ ଆଶ୍ଚର୍ଯ୍ୟର କଥା ! ଯୁଦ୍ଧରେ ଦେବତା ମାନଙ୍କୁ ପରାଜିତ କରି ଦୈତ୍ୟରାଜ ସମସ୍ତ ଦେବଲୋକ ସ୍ୱାଧୀନଭର ପରିପାଳନ କରିବାକୁ ଲାଗିଲେ ।

ହିରଣ୍ୟକଶ୍ୟପୁ ଦେବତାମାନଙ୍କୁ ନିଷ୍ପିଡ଼ିତ କରି, ଚପଳ ନେତ୍ରରେ ସମସ୍ତ ଦେବାଙ୍ଗନାମାନଙ୍କୁ ପରିଗ୍ରହ କରି, ଗନ୍ଧର୍ବମାନଙ୍କର ଗାନ ଶୁଣି, କିନ୍ନରମାନଙ୍କର ସେବା ସ୍ୱୀକାର କରି ଅପ୍ସରାମାନଙ୍କ ସହ ନନ୍ଦନ ବନରେ ବିହାର କଲେ । ଯାଗମାନଙ୍କର ଦେବତୋଦ୍ଦେଶରେ ପ୍ରଦତ୍ତ ହବିର୍ଭାଗ ନିଜେ ବଳପୂର୍ବକ ଗ୍ରହଣ କରି ଅନୁଭବ କଲେ । ଦେବତାମାନେ ପୂର୍ବୋକ୍ତ ଶାନ୍ତ ହବିର୍ଭାଗ ନ ପାଇ ମନମ୍ଲାନ ଭାବେ କାଳାତିପାତ କଲେ । ଯାଗମାନଙ୍କର ହବିର୍ଭାଗ ହିରଣ୍ୟକଶିପୁ ଯେଉଁ ଦିନଠାରୁ ନିଜେ ଗ୍ରହଣ କଲେ ସେହି ଦିନଠାରୁ ଦେବତାମାନେ ନିରାହାର ହୋଇ ଅମିତ ଦୁଃଖ ପାଇଲେ । ଏହିପରି ଦୈତ୍ୟରାଜ ୨୦ ଦେବ-ଯୁଗ ପର୍ଯ୍ୟନ୍ତ ତିନ ଲୋକ ଶାସନ କରି ଦେବତାମାନଙ୍କୁ ନାନା ପ୍ରକାର ବାଧା ଦେଉଥିଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନଂ ନାମ ସପ୍ତମୋଽଧ୍ୟାୟଃ ।



# ଅଷ୍ଟମ ଅଧ୍ୟାୟ

ଜୈମିନି – ଏହାପରେ ବହୁକାଳ ଅତିବାହିତ ହେଲା ପରେ ଦେବତାମାନେ ଦିକ୍‌ପାଳମାନଙ୍କ ସହିତ ଚତୁର୍ମୁଖ ବ୍ରହ୍ମାଙ୍କର ସମୀପକୁ ଯାଇ ଦୈତ୍ୟରାଜର ସମସ୍ତ ନିଷ୍ଠୁରଚେଷ୍ଟା ବର୍ଣ୍ଣନା କଲେ । ଜଗତ୍ ସ୍ରଷ୍ଟା ବ୍ରହ୍ମା ଦେବତାମାନଙ୍କର ଆବେଦନ ଶୁଣି କହିଲେ–"ମୋଠାରୁ ବର ପାଇଥିବା ସେହି ଦୈତ୍ୟରାଜକୁ ମୁଁ ମାରିପାରିବି ନାହିଁ । ସେ ଉଗ୍ର ତପସ୍ୟା କରିବାରୁ ମୁଁ ସେହିପରି ବର ଦେବାକୁ ବାଧ୍ୟ ହୋଇଥିଲି । ଆସ ସମସ୍ତେ ଆନନ୍ଦମୟ ବୈକୁଣ୍ଠପୁରକୁ ଯାଇ, ସେହି ଅସୁରରିଙ୍କୁ ସମସ୍ତ ଜଣାଇବା । ସେ ଏହି ଦୈତ୍ୟକୁ ବଧ କରି ଆମ୍ଭ-ମାନଙ୍କର ମଙ୍ଗଳ ସାଧନ କରିବେ ।" ଚତୁର୍ମୁଖ ବ୍ରହ୍ମା ଏହା କହି ଦେବତା-ମାନଙ୍କ ସହିତ ବିଷ୍ଣୁଙ୍କର ସନାତନ ଧାମ ବୈକୁଣ୍ଠପୁରରେ ଉପସ୍ଥିତ ହେଲେ । ବୈକୁଣ୍ଠପୁର କାମବୃକ୍ଷ, ଚତୁଃପାର୍ଶ୍ୱରେ ଘଣ୍ଟାରାଜିଦ୍ୱାରା ବିଭୂଷିତ, ଚନ୍ଦ୍ରମଣ୍ଡଳ ପରି କାନ୍ତିରେ ଉଦ୍ଭାସିତ, ଚନ୍ଦ୍ରକାନ୍ତ, ଇନ୍ଦ୍ରନୀଳ, ପଦ୍ମରାଗ, ବୈଦୂର୍ଯ୍ୟ, ଗାରୁତ୍ମତ, ପ୍ରବାଳାଦି ମଣିଗଣ, ସୁବର୍ଣ୍ଣ ଓ ରଜତରେ ନିର୍ମିତ ଅସଂଖ୍ୟ ସମୁନ୍ନତ ବିମାନ ଗଣରେ ପରିପୂର୍ଣ୍ଣ, ବାୟୁ ସଞ୍ଚାଳନନିରତ ଶୁମରଧାରିଣୀ ଅପ୍ସରା-ମାନଙ୍କରେ ବିଦ୍ୟୋତିତ, ସ୍ୱର୍ଣ୍ଣ ପଟ୍ଟାଳାଳଙ୍କୃତ ସୌଧରାଜିରେ ଉଦ୍ଭାସିତ, ମୁକ୍ତା ନିର୍ମିତ, ମୁକ୍ତାମାନଙ୍କଦ୍ୱାରା ଧୃତ ଛତ୍ରରାଜିରେ ବିଶୋଭିତ, ସମୁନ୍ନତ ପତାକାଳଙ୍କୃତ ସୌଧ ଶ୍ରେଣୀ ସ୍ଥାପିତ, କଳ୍ପାନ୍ତ ସୂର୍ଯ୍ୟ ପରି ଦେଦୀପ୍ୟମାନ ବହୁବିଧ ରତ୍ନ ରାଜିର ତେଜରେ ଉଦ୍ଭାସିତ, ସୁବର୍ଣ୍ଣ ନିର୍ମିତ ସମୁନ୍ନତ ପ୍ରାକାରରେ ସମୁପ-ଶୋଭିତ, ବିରଜା ନାମକ ପ୍ରସିଦ୍ଧ ଅମୃତ ସନ୍ତାନମାନଙ୍କ ଦ୍ୱାରା ପରିବେଷ୍ଟିତ, ଚତୁର୍ଦ୍ଦିଗରେ ଯଥାକ୍ରମେ ସୁବର୍ଣ୍ଣ, ରଜତ, ସ୍ଫଟିକ ଓ ଗଜଦନ୍ତ ଦ୍ୱାରା ନିର୍ମିତ ଚତୁର୍ଦ୍ୱାର ବିଶିଷ୍ଟ, ପଞ୍ଚଶିଖର ପରି ଉନ୍ନତ ଗୋପୁର ବିଶିଷ୍ଟ ପ୍ରବାଳଖଚିତ ମରକତ ତୋରଣ ବିଶିଷ୍ଟ, ସ୍ୱର୍ଣ୍ଣ ନିର୍ମିତ କପାଟବିଶିଷ୍ଟ, ଚତୁଃପାର୍ଶ୍ୱରେ କଳ୍ପ ବୃକ୍ଷମୟ ଅପ୍ରାକୃତ ପକ୍ଷିସମୂହର ମଧୁର ନିନାଦ ବିଜୃମ୍ଭିତ ମନୋହର ଉଦ୍ୟାନରେ ପରିବେଷ୍ଟିତ, ସମୁନ୍ନତ ନାନାରତ୍ନମୟ କ୍ରୀଡାଶୈଳ ମାନଙ୍କରେ ସୁଶୋଭିତ, ଶତ ସହସ୍ର ଅନନ୍ତ ସଂଖ୍ୟକ ଦଳ ବିଶିଷ୍ଟ କୁମୁଦୋତ୍ପଳ ନାମଧାରୀ ସ୍ୱର୍ଣ୍ଣପଦ୍ମେସୁଶୋଭିତ, ହଂସ, ସାରସ, ଚକ୍ରବାକ, ଜଳକୁକ୍‌କୁଟ ପ୍ରଭୃତି ଦିବ୍ୟ ପକ୍ଷୀମାନଙ୍କ କ୍ରୀଡା ବିଳସିତ ଅମୃତମୟ ସଲିଳପୂର୍ଣ୍ଣ, ସରୋବର ମାନଙ୍କରେ ବିରାଜିତ, ବିରଜାନଦୀ ଶୀକରରେ ଶୀତଳ ଉଦ୍ୟାନରେ ବିକଶିତ ଚମ୍ପକ ଅଶୋକ

ପୁନ୍ନାଗ ଜାତି କୁନ୍ଦ ପ୍ରଭୃତି ପୁଷ୍ପମାନଙ୍କର ରେଣୁ ସମ୍ମିଶ୍ରିତ ସତତ ମନ୍ଦବାହୀ ମଳୟମାରୁତଶୀତଳସମ୍ବଳିତ; ସୌଧ ସମୂହର ଗବାକ୍ଷ ରନ୍ଧ୍ରମାନଙ୍କରୁ ବିନିର୍ଗତ, କେଶ ସଂସ୍କାରାର୍ଥ ସର୍ବତୋବ୍ୟାପୀ ଧୂମପଟଳର ପରିମଳରେ ସୁରଭିକୃତ ବୈକୁଣ୍ଠପୁରରେ ପ୍ରବେଶ କଲେ । କେଉଁ ସ୍ଥାନରେ ଜନ୍ମବାସନାବନ୍ଧରୁ ନିର୍ମୁକ୍ତ ଦୁଃଖାତୀତ ବିମୁକ୍ତମାନେ ବାସ କରୁଥିଲେ, କେଉଁ ସ୍ଥାନରେ ସୂର୍ଯ୍ୟଚନ୍ଦ୍ରାଦିଙ୍କର କାନ୍ତିକୁ ତିରସ୍କାର କରୁଥିବା ସ୍ୱାଭାବିକ କାନ୍ତି ଯୁକ୍ତ ସୁରପୁରମାନଙ୍କର ମଧ୍ୟ ଦୁର୍ନିରୀକ୍ଷ୍ୟ ହୋଇ ଶୋଭା ପାଉଥିଲା । ଲୋକମାନଙ୍କର ବାଞ୍ଛା ପୂରଣ କରିବା ସକାଶେ କାମଧେନୁଗଣ ପ୍ରତିସୌଧର ଦ୍ୱାରଦେଶରେ ଅବସ୍ଥାନ କରୁଥିଲେ । ସେହି ନଗରୀର ଚତୁଷ୍ପଥମାନଙ୍କରେ ଅମୃତମୟୀନଦୀମାନ ପ୍ରବାହିତ ହେଉଥିଲା । ସେହି ନଗରରେ ଭଗବାନ୍ ବିଷ୍ଣୁଙ୍କର ସ୍ୱରୂପ ଲାଭ କରି ତରୁଣଅରୁଣକାନ୍ତି ପ୍ରକାଶ କରି ନିତ୍ୟମୁକ୍ତ କଳେବରଗୁଡ଼ିକ ପ୍ରକାଶ ପାଉଥିଲା । ସେହି ନଗରର ଅନ୍ତ- ର୍ଗତରେ ଧ୍ୱଜ ପତାକାଦି ଅଲଂକୃତ, ଆସ୍ଥାନ ମଣ୍ଡପରେ ନବରତ୍ନ ଖଚିତ ଦଶ ସହସ୍ର ସ୍ତମ୍ଭ ପ୍ରତିଷ୍ଠିତ ଆନନ୍ଦମୟ ଭଗବାନ୍ ବାସୁଦେବ ବିଜେ କରିଥିଲେ । ପଣ୍ଡିତମାନେ ଏହି ନଗରକୁ ଅନନ୍ତ ଐଶ୍ୱର୍ଯ୍ୟର ଆକର ବୋଲି ବ୍ୟବହାର କରିଆସୁଅଛନ୍ତି । ଏହି ମହୈଶ୍ୱର୍ଯ୍ୟମୟ ଭଗବାନ୍ ନାରାୟଣଙ୍କର ନିତ୍ୟ ଅସ୍ଥାନର ନାମ ବୈକୁଣ୍ଠପୁର । ଏହା ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ, ଶୁଦ୍ଧ, ଜ୍ଞାନ ବଳ ଐଶ୍ୱର୍ଯ୍ୟ ବୀର୍ଯ୍ୟ ଓ ତେଜଃ ପୁଞ୍ଜର ଆଧାର, ସତ୍ୟଜ୍ଞାନାନନ୍ଦମୟ, ଦୋଷଶୂନ୍ୟ ନିତ୍ୟ ମୁକ୍ତ- ମାନଙ୍କ ଦ୍ୱାରା ସଦା ସେବିତ, ରଜସ୍ତମୋ ବିରହିତ ଓ ଶୁଦ୍ଧ ସତ୍ତ୍ୱମୟ । ସେହି ବୈକୁଣ୍ଠପୁରରେ ପ୍ରବେଶ କରିବା ମାତ୍ରେ ସମସ୍ତେ ମହାନନ୍ଦନିର୍ଭରିତ ହୋଇ ଉଠିଲେ । ସେମାନେ ବିଷ୍ଣୁଙ୍କର ଦର୍ଶନ ଉଦ୍ଦେଶ୍ୟରେ ଭିତରକୁ ପ୍ରବେଶ କରିବାକୁ ଦ୍ୱାର ସମୀପରେ ଉପସ୍ଥିତ ହେଲେ । ଦ୍ୱାରପାଳ ସମ୍ମୁଖ ସେମାନଙ୍କୁ ପ୍ରବେଶୋଦ୍ୟତ ଦେଖି, ବିମୁଖ ହୋଇ ଯୋଗୀଶ୍ୱରମାନଙ୍କର ପ୍ରାପ୍ୟ ଏବଂ କର୍ମାଧିକାରୀ ଆପଣମାନଙ୍କର ନାହିଁ ବୋଲି କହି ବାରଣ କଲା । ଦ୍ୱାରପାଳ- ଦ୍ୱାରା ନିବାରିତ ଦେବତାମାନେ ଭଗ୍ନମନୋରଥ ହୋଇ ଦୁଃଖିତାନ୍ତଃକରଣରେ ସେଠାରେ ଛିଡ଼ା ହୋଇ ରହିଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ
କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନଂ ନାମ ଅଷ୍ଟମୋଽଧ୍ୟାୟଃ ।

—୦—

# ନବମ ଅଧ୍ୟାୟ

ଜୈମିନି—ବୈକୁଣ୍ଠପୁର ଦ୍ୱାରପାଳ ସୁପ୍ରତିଷ୍ଠ ଦେବତାମାନଙ୍କୁ ସୁମୁଖ ଦ୍ୱାର ନିବାରିତ ଓ ଦୁଃଖରେ ଅବସ୍ଥିତ ହେବା ଦେଖି କହିଲେ—'ସୁରଗଣ, ଆପଣମାନେ ଏହିଠାରେ ଅବସ୍ଥାନ କରନ୍ତୁ, ମୁଁ ଯାଇ ପ୍ରଭୁଙ୍କ ସମ୍ମୁଖରେ ଆପଣମାନଙ୍କର ଆଗମନ ଜଣାଉଛି'। ଏହା କହି ସେମାନଙ୍କୁ ସେଠାରେ ରଖି ଲକ୍ଷ୍ମୀ ସହିତ ଭଗବାନ୍ ଯେଉଁଠାରେ ବିଜେ କରିଥିଲେ, ସେ ସ୍ଥାନକୁ ଯାଇ ଭଗବାନଙ୍କୁ ଦେଖି ସାଷ୍ଟାଙ୍ଗ ପ୍ରଣିପାତ କରି ହାତ ଯୋଡ଼ି ଗରୁଡ଼ଙ୍କ ପାଖରେ ଛିଡ଼ାହେଲା। ଭଗବାନ୍ ହସିତ ବଦନରେ କାହିଁକି ଆସିଅଛ ବୋଲି ପଚାରିଲେ। ସର୍ବଜ୍ଞ ଭଗବାନ୍ ସମସ୍ତ ଜାଣିଶୁଣି ମଧ୍ୟ ଏପରି ପଚାରିବା ଅବଶ୍ୟ ଆଶ୍ଚର୍ଯ୍ୟର ବିଷୟ। ଭଗବାନ ପଚାରିବାପରେ ଦ୍ୱାରପାଳ ବିନୟ ସହକାରେ ଧୀରସ୍ୱରରେ ଜଣାଣ କଲା—'ବ୍ରହ୍ମାଦି ଦେବତାମାନେ ଦୈତ୍ୟମାନଙ୍କ ଦ୍ୱାରା ନିପୀଡ଼ିତ ହୋଇ ଆପଣଙ୍କର ଦର୍ଶନ ସୌଭାଗ୍ୟ ଲାଭ ଆଶାରେ ଦ୍ୱାରଦେଶରେ ଉପସ୍ଥିତ ହୋଇ ଅଛନ୍ତି। ସେମାନେ ସେହି ରାକ୍ଷସର ଘୋର କୁକର୍ମମାନ ଜଣାଇବାକୁ ଆସିଅଛନ୍ତି। ପ୍ରଭୋ, ବର୍ତ୍ତମାନ ମୋର କର୍ତ୍ତବ୍ୟ କଣ ଆଦେଶ କରନ୍ତୁ।' ଜୈମିନି—ଭଗବାନ୍ ବାସୁଦେବ ଦ୍ୱାରପାଳର ବିଜ୍ଞାପନ ଶୁଣି ସେନାଧିପତି ବିଷ୍ୱକ୍‌ସେନଙ୍କର ହସ୍ତ ଧରି ବ୍ରହ୍ମାଦି ଦେବତାମାନେ ଅବସ୍ଥାନ କରିଥିବା ସ୍ଥାନକୁ ବିଜେ କଲେ। ଅନନ୍ତ ଚରଣରେ ପାଦୁକା ଧାରଣ କରିଥିଲେ। ଭଗବାନଙ୍କର ଶରୀର ଅଚିନ୍ତ୍ୟମୟ ନବଘନବୋଦ୍ଭାସୀ ଯୌବନ ଓ ଲାବଣ୍ୟରେ ପରିପୂର୍ଣ୍ଣ ଥିଲା। ମୁଖରେ ଅମୃତମୟ ମନ୍ଦସ୍ମିତ ପ୍ରକାଶ ପାଉଥିଲା। ଭଗବାନଙ୍କର ମୁଖ ପରିପୂର୍ଣ୍ଣଚନ୍ଦ୍ରର କାନ୍ତିକି ଧିକ୍‌କାର କରି ପ୍ରପନ୍ନଗୃତକମାନଙ୍କୁ ଅମୃତ ଦାନ କରି ସୁଧାନିଧି ନାମ ସାର୍ଥକ କରୁଥିଲା। ନେତ୍ରଯୁଗଳ ଶରତ୍କାଳୀନ ସୂର୍ଯ୍ୟକିରଣରେ ବିକଶିତ ଶ୍ୱେତପଦ୍ମ ପରି ଶୋଭା ପାଉଥିଲା। ଭ୍ରୂଦ୍ୱୟ ବିସ୍ମୟ-ସୂଚକ ଦେଖାଯାଉଥିଲା। ଦୃଷ୍ଟି ନିର୍ମଳ ଓ ଶୀତଳ ଥିଲା ଓ ଦୋଷରହିତ ଇନ୍ଦ୍ରନୀଳ ମଣି ପରି କୋମଳ କାନ୍ତିରେ ଦର୍ଶକ ଭକ୍ତବୃନ୍ଦଙ୍କୁ ଆନନ୍ଦ ସମୁଦ୍ରରେ ନିମଗ୍ନ କରୁଥିଲା। ସମସ୍ତ ବ୍ରହ୍ମାଣ୍ଡ ଅନେକ ସହସ୍ର କୋଟି ସୂର୍ଯ୍ୟଙ୍କର କିରଣକୁ ଧିକ୍‌କାର କରୁଥିବା ଭଗବାନଙ୍କର ତେଜରେ ଉଦ୍ଭାସିତ ହେଉଥିଲା। କଟି ପ୍ରଦେଶ ପୁଟପାକବିଶୁଦ୍ଧ ସ୍ୱର୍ଣ୍ଣ ପରି ଭାସମାନ ପୀତାମ୍ବରରେ ଆବଦ୍ଧ ଥିଲା। ବୃତ୍ତ ଓ ସୁଦୀର୍ଘ ଚାରି ବାହୁରେ ଶଙ୍ଖ, ଚକ୍ର ଗଦା ଓ ପଦ୍ମ

ଶୋଭା ପାଉଥିଲା । ମୁଖଚନ୍ଦ୍ର ଅପୂର୍ବ ପାବନ ଓ ଉପସେବ୍ୟ ପରିମଳରେ ଉଦ୍ଭାସିତ ଥିଲା । ଲକ୍ଷ୍ମୀଙ୍କର ନିବାସ ଭବନ ବକ୍ଷସ୍ଥଳ ଶ୍ରୀବତ୍ସ ଓ କୌସ୍ତୁଭରେ ଅଳଙ୍କୃତ ଥିଲା । ଗ୍ରୀବାରେ ନବରତ୍ନ ନିର୍ମିତ ଗ୍ରୈବେୟକ ହାର ଭୁଜରେ କେୟୂର ହସ୍ତରେ କଟକ, ଅଙ୍ଗଦ ଓ କଙ୍କଣ, ଗଣ୍ଡସ୍ଥଳରେ ଚଳ ମଣିକୁଣ୍ଡଳ, ଏବଂ ମସ୍ତକରେ ସାମ୍ରାଜ୍ୟ ସୂଚକ କିରୀଟ ଶୋଭା ପାଉଥିଲା । ପାଦପଦ୍ମ ଅଙ୍ଗୁଷ୍ଠ ଦେଶରୁ ପ୍ରବାହିତ ଗଙ୍ଗାଙ୍କର ତରଙ୍ଗାଘାତରେ ପରିଶୁଭ୍ର ନଖମଣୀଙ୍କର କାନ୍ତିରେ ଉଦ୍ଭାସି ହେଉଥିଲା । ସମସ୍ତ ଭୂତମାନଙ୍କର ଶରଣ୍ୟ, ଚତୁର୍ବିଧ ପୁରୁଷାର୍ଥର ଦାତା, ଭଗବାନ ନିତ୍ୟ ମୁକ୍ତମାନଙ୍କୁ ଅମୃତ ବର୍ଷୀ ବଚନାମୃତ ଦ୍ୱାରା ଆପ୍ୟାୟିତ କରୁଥିଲେ ଏବଂ ସ୍ୱସ୍ୱାନୁଭବଜନିତ ଆନନ୍ଦରେ ପରିପୂର୍ଣ୍ଣ ଥିଲେ । ପରମ୍ପୁରୁ ଭଗବାନଙ୍କର ହୃଦୟ କରୁଣା ରସରେ ଅପ୍ଲୁତ ଥିଲା । ଜଗନ୍ନାଥ ସ୍ୱରୂପୀ ଭଗବାନ, ଭଦ୍ର, ସୁଭଦ୍ର, ନନ୍ଦ ଓ ସୁନନ୍ଦାଦି ପାର୍ଷଦମାନଙ୍କ ଦ୍ୱାରା ବେଷ୍ଟିତ ହୋଇଥିଲେ । ସିଦ୍ଧମାନେ ଜୟ ଜୟ ଶବ୍ଦ ସହ ନୃତ୍ୟ କରି ସେବା କରୁଥିଲେ । ପୂର୍ଣ୍ଣଚନ୍ଦ୍ରଙ୍କର କାନ୍ତିକୁ ଧିକ୍କାର କରୁଥିବା କାନ୍ତିବିଶିଷ୍ଟ ହେମ ଦଣ୍ଡରେ ଉଦ୍ଭାସିତ ଛତ୍ରତଳେ ବିରାଜମାନ ଥିଲେ । ମନ୍ଦସ୍ମିତୋଦ୍ଭାସିତ ମୁଖାରବିନ୍ଦ ବିଶିଷ୍ଟ, ବିମଳାଦି ଅଷ୍ଟ ଶକ୍ତିମାନେ ପାର୍ଶ୍ୱଦେଶରେ ଅବସ୍ଥାନ କରି ଚାମର ଚାଳନ କରୁଥିଲେ । ମୁକ୍ତମାନେ ଚାରି ଦିଗରେ ରହି ସ୍ତୋତ୍ରଗାନ କରୁଥିଲେ । ଦେବତାମାନେ ସମଦର୍ଶୀ ଅନନ୍ତ କଲ୍ୟାଣ ଗୁଣର ଆଧାର ଯୌଗନ୍ଧର ସବୁ ପରି ସର୍ବସନ୍ତାପନାଶକ ଦେବଦେବ ଭଗବାନଙ୍କୁ ଦେଖି ଛିନ୍ନଶାଖାବୃକ୍ଷ ପରି ପାଦତଳେ ପଡ଼ି ସାଷ୍ଟାଙ୍ଗ ପ୍ରଣିପାତ କଲେ । ଦେବତାମାନେ ଦୟାମୟ ଭଗବାନଙ୍କର ଅନୁଜ୍ଞାରେ ଉଠି ହାତ ଯୋଡ଼ି ଚାରି ଦିଗରେ ଅବସ୍ଥାନ କଲେ । ସର୍ବଜ୍ଞ ଦେବଦେବ ଭଗବାନ ସମସ୍ତ ଜାଣିଶୁଣି ମଧ୍ୟ ନ ଜାଣିଲା ପରି ହିମାଳୟ ପଦ୍ମ ପରି ଅବସନ୍ନ ମୁଖ ଦେବତାମାନଙ୍କୁ ଆଗମନ କାରଣ ପଚାରିଲେ । ସୁରଗଣ, ଆପଣମାନେ ଚତୁର୍ମୁଖ ବ୍ରହ୍ମଙ୍କ ସହିତ କାହିଁକି ଆସିଛନ୍ତି ? ଆପଣମାନଙ୍କର ମଙ୍ଗଳ ହେଉ । ଶୀଘ୍ର ପ୍ରକାଶ କରନ୍ତୁ । ମୋର ମିତ୍ର ଅମିତ୍ର, ଇଷ୍ଟ—ଅନିଷ୍ଟ କେହି ନାହାନ୍ତି । ଯେଉଁମାନେ ଆପଣମାନଙ୍କର ବିରୋଧୀ ସେମାନେ ମୋର ବିରୋଧୀ । ଯେଉଁମାନେ ଆପଣମାନଂକର ମିତ୍ର, ସେମାନେ ମୋର ମଧ୍ୟ ମିତ୍ର । ଆପଣମାନଂକର ଉଦ୍ଦେଶ୍ୟ ସାଧନ କରିବି । ସୁରଗଣ ମୁଁ ସଜ୍ଜନମାନଂକର ସନ୍ମାର୍ଗ ରକ୍ଷା କରେ ଓ ଦେବ ଶତ୍ରୁମାନଙ୍କୁ ନିର୍ଦ୍ଦୟ ଭାବେ ନାଶକରେ—ଏହା ମୋର ବ୍ରତ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବସ୍ତୁଖଣ୍ଡେ ସିଂହାଚଳ କ୍ଷେତ୍ରମାହାତ୍ମ୍ୟ
ବର୍ଣ୍ଣନଂ ନାମ ନବମୋଽଧ୍ୟାୟଃ ।



## ଦଶମ ଅଧ୍ୟାୟ

ଦେବତାମାନେ ଭଗବାନଙ୍କର ସେହି ପ୍ରଶ୍ନ ଶୁଣି ଆନନ୍ଦ ଗଦ୍‌ଗଦ ହୋଇ ବିନୟସହକାରେ ଜଣାଇଲେ—ହେ ଷାଡ଼୍‌ଗୁଣ୍ୟପୂର୍ଣ୍ଣ, ! ଆମ୍ଭେମାନେ ହିରଣ୍ୟାକ୍ଷର ଅନୁଜ ପ୍ରବଳ ପରାକ୍ରମୀ ମର୍ଯ୍ୟାଦାହୀନ, ହିରଣ୍ୟକଶିପୁ ଦ୍ୱାରା ପରାଜିତ ହୋଇଅଛୁଁ । ହେ ଅସୁରମର୍ଦ୍ଦନ ! ହିରଣ୍ୟାକ୍ଷର କ୍ରୂର କୃତ୍ୟମାନ ଅନିର୍ବଚନୀୟ ଏବଂ ଅକଥନୀୟ ଥିଲା । ତା ଦ୍ୱାରା ପର୍ବତମାନେ ଭସ୍ମୀକୃତ, ଦିଗ୍‌ଗଜମାନେ କ୍ଷତବିକ୍ଷତ ଏବଂ ଅସଂଖ୍ୟ ମୌନମୁଦ୍ରାବଲମ୍ବୀ ଋଷିଗଣ ଭକ୍ଷିତ ହୋଇଥିଲେ । ବୃତ୍ରଶରୀର, ପ୍ରବଳପରାକ୍ରମୀ ସମୃଦ୍ଧିଶାଳୀ ତାର ଆକ୍ରମଣ ଭାରରେ ନଦୀ, ନଦ, ବନ, ପର୍ବତାଦି ସହିତ ସମଗ୍ର ଭୂମଣ୍ଡଳ ରସାତଳଗାମୀ ହୋଇ ଯାଇଥିଲା । ଏହାଠାରୁ ବଳି ଆଉ ଅଧିକ ଅତ୍ୟାଚାର କଅଣ ହୋଇପାରିବ ? ସେହି ଦୁରାତ୍ମାର ରାକ୍ଷସକୁ ଯଜ୍ଞବରାହରୂପେ ଆପଣ ସଂହାର କରି ରସାତଳଗାମୀ ଭୂମଣ୍ଡଳକୁ ଉଦ୍ଧାର କରି ଯଥାସ୍ଥାନରେ ସ୍ଥାପନ କରି ଅଛନ୍ତି ହିରଣ୍ୟାକ୍ଷର ମୃତ୍ୟୁପରେ ତାର ସାନଭାଇ ହିରଣ୍ୟକଶିପୁ ଭୟଙ୍କର ତପସ୍ୟା କରି ଚତୁର୍ମୁଖ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କଲା । ବ୍ରହ୍ମା ସନ୍ତୁଷ୍ଟ ହୋଇ ଦେବ, ମାନୁଷ, ତିର୍ଯ୍ୟଗାଦିଦ୍ୱାରା, ଅସ୍ତ୍ର, ଶସ୍ତ୍ର, ପର୍ବତ, ବୃକ୍ଷାଦିଦ୍ୱାରା, ଦିନ ବା ରାତ୍ରିରେ ଭୂମି ଓ ଆକାଶରେ ମରିବ ନାହିଁ ବୋଲି ତାକୁ ଅସାଧାରଣ ବର ଦେଇଅଛନ୍ତି । ଆହୁରି ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ କୌଣସି ଚେତନ ବା ଅଚେତନ ଦ୍ୱାରା ମଧ୍ୟ ମରିବ ନାହିଁ ବୋଲି ବର ଦେଇଅଛନ୍ତି । ଯୁଦ୍ଧରେ ଦେବଦାନବାଦି ଦ୍ୱାରା ମଧ୍ୟ ମରିବ ନାହିଁ ବୋଲି ସେ ବର ପାଇଅଛି । ଏପରି ଅଜେୟ ହୋଇ ଆମ୍ଭମାନଙ୍କୁ ଦଣ୍ଡଦେଇ ସ୍ୱର୍ଗାଦି ଆକ୍ରମଣ କରି ସେହି ଭୁବନର କଣ୍ଟକ ସମସ୍ତ ସ୍ୱର୍ଗ ଭୋଗ ଅନୁଭବ କରୁଅଛି । ସମସ୍ତ ଅପ୍‌ସରା ତାକୁ ପ୍ରତିଦିନ ସେବା କରୁ ଅଛନ୍ତି । ସିଦ୍ଧ, ସାଧ୍ୟ, ବିଦ୍ୟାଧର, କିନ୍ନର, କିଂପୁରୁଷ, ଗରୁଡ଼, ଗନ୍ଧର୍ବାଦି ସହିତ ଆମ୍ଭେମାନେ ବିଭିନ୍ନ ବେଶ ଧାରଣ କରି ଭୂମଣ୍ଡଳରେ ବୁଲୁଅଛୁଁ । ଆମ୍ଭମାନଙ୍କର ପ୍ରାପ୍ୟ ସମସ୍ତ ଯଜ୍ଞଭାଗ ସେ ଅନୁଭବ କରୁଅଛି

ବିଷସଂକ୍ରକ ! ଏପରି ଭାବେ ସେହି ରାକ୍ଷସଦ୍ୱାରା ନିର୍ଯ୍ୟାତିତ ହୋଇ ଆମ୍ଭେମାନେ ଆମ୍ଭମାନଙ୍କର ସକଳପ୍ରକାର ଦୁରବସ୍ଥା ଜଣାଇବାକୁ ଆପଣଙ୍କର ସମ୍ମୁଖକୁ ଆସିଅଛୁଁ । ଆମ୍ଭେମାନେ ଅଦୃଷ୍ଟପୂର୍ବ ଏହି ଭୁବନରେ ପ୍ରବେଶ କରି ସୁମୁଖ ନାମକ ଦ୍ୱାରପାଳ ଦ୍ୱାରା ନିବାରିତ ହୋଇ ଦୁଃଖରେ ରହିଥିଛୁଁ । ସନାତନ, ସର୍ବଦୁଃଖାପହାରୀ, ମହାନନ୍ଦଦାୟକ ଏହି ଭୁବନରେ ସୁଦ୍ଧା ଆମ୍ଭେମାନେ ଅସହ୍ୟ ଦୁଃଖ ପାଉଅଛୁଁ ।" ନୈମିଷ କହିଲେ—ସୁଧୀଗଣ, ଦେବତାମାନେ ନିଜ ନିଜ ଦୁରାଭବ ଏପରି ଜଣାଇ ପିତାଙ୍କ ସମ୍ମୁଖରେ ପୁତ୍ରମାନେ ରହିଲାପରି ନତମସ୍ତକ ହୋଇ ଦୁଃଖରେ ଅବସ୍ଥାନ କଲେ । ଆଶ୍ରିତ ଦୁଃଖାପହାରୀ ଦୟାସାଗର ଭଗବାନ୍ ଲକ୍ଷ୍ମୀପତି ସେମାନଙ୍କର ଆର୍ତ୍ତି ନିବେଦନ ଶୁଣି, ଦେବତାମାନଙ୍କୁ ଆଶ୍ୱାସନା ଦେଇ ବିକଶିତ ପଦ୍ମଦଳାନୁକାରୀ ଅଧରମଧ୍ୟସ୍ଥିତ ଦନ୍ତକାନ୍ତିରେ ଦିଗନ୍ତର ପ୍ରକାଶିତ କରି ସେମାନଙ୍କର ମୋହାନ୍ଧକାର ଦୂରକରି ଆନନ୍ଦମୟ ବାକ୍ୟରେ ଉତ୍ତର ଦେଲେ । ଭଗବାନ କହିଲେ—"ଦେବଗଣ ! ଆପଣମାନେ ଦୁଃଖ ଦୂରକରି ନିଜ ନିଜ ସ୍ଥାନକୁ ଯାଆନ୍ତୁ । ମୁଁ ଅଳ୍ପ ସମୟ ମଧ୍ୟରେ ଲୋକକଣ୍ଟକ ହିରଣ୍ୟକଶିପୁକୁ ସଂହାର କରୁଅଛି । ଯେ କୌଣସି ପ୍ରାଣୀଦ୍ୱାରା ଯେ ମରିବ ନାହିଁ ବୋଲି ବ୍ରହ୍ମା ବର ଦେଇ ଅଛନ୍ତି । ଅତଏବ ଏ ପର୍ଯ୍ୟନ୍ତ ଅଶ୍ରୁତଦୃଷ୍ଟପୂର୍ବ ଅଦ୍ଭୁତ ଶରୀର ଧାରଣ କରି ରାକ୍ଷସକୁ ସଂହାର କରିବାକୁ ହେବ । ସଂକଳ୍ପମାତ୍ରରେ ଜଗତର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟକାରୀ ମୋ ପକ୍ଷରେ ଆନନ୍ଦ ବା କୋପାବସ୍ଥାରେ କରି ନ ହେବ ଏପରି ଅସାଧ କଅଣ ଅଛି ? ମୋର ଦର୍ଶନ ଲାଭକରିବା ଉଦ୍ଦେଶ୍ୟରେ ଆସିଥିବା ଆପଣମାନଙ୍କୁ ଯେଉଁ ଦ୍ୱାରପାଳ ବାଧା ଦେଇଅଛି, ସେହି ରାକ୍ଷସର ମୃତ୍ୟୁର କାରଣ ହେଉ ।" ଭଗବାନଙ୍କର ଏହି ଆଶ୍ୱାସନା ବାଣୀ ଶୁଣି ଦେବତାମାନେ ସ୍ୱ ସ୍ୱ ସ୍ଥାନକୁ ପ୍ରସ୍ଥାନ କଲାପରେ ଭଗବାନ ସମୀପସ୍ଥ ସୁମୁଖକୁ ଦେଖି କହିଲେ—'ତୁ ମୋର ଦର୍ଶନାର୍ଥୀ ଶୋକାତୁର ଦେବତାମାନଙ୍କୁ ବାରଣ କରି ବାଧା ଦେଇଅଛୁ, ଅତଏବ ଲୋକକଣ୍ଟକ ହିରଣ୍ୟକଶିପୁର ପୁତ୍ରରୂପେ ଜନ୍ମ ଲାଭ କରିବୁ । ଏହି ବ୍ରହ୍ମା ମୋର ନାଭିକମଳରୁ, ଇନ୍ଦ୍ର ଓ ଦିକ୍‌ପାଳମାନେ ମୋର ବାହୁରୁ ଉତ୍ପନ୍ନ; ବାୟୁ, ସୂର୍ଯ୍ୟ, ଅଗ୍ନି ଓ ଯମ ମୋର ଆଜ୍ଞା କେବେହେଲେ ଲଂଘନ କରନ୍ତି ନାହିଁ । ଶରଣାଗତ ଦର୍ଶନାର୍ଥୀ ଏହିମାନଙ୍କୁ ନିବାରଣ କରି ବାଧା ଦେବାହେତୁ ଏହି ଦଣ୍ଡ ଅନୁଭବ କରିବୁ । ମୋତେ ସେବା କରିବା ଉଦ୍ଦେଶ୍ୟରେ ଆସୁଥିବା ଭକ୍ତମାନଙ୍କୁ ଯେ ବାଧାଦେବ, ସେ ନିଶ୍ଚୟ ଦଣ୍ଡ ପାଇବ ।

ତୋର ସ୍ୱଭାବ ଦୁଷ୍ଟ । ଅତଏବ ତୁ ରାକ୍ଷସ ଜନ୍ମ ପାଇବୁ । ତାହାହେଲେ ଆଉ କେବେ ମୋର ଭକ୍ତମାନଙ୍କୁ ବାଧା ଦେବୁ ନାହିଁ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବୈଷ୍ଣବଖଣ୍ଡେ ସିଂହାଚଳ
କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନଂ ନାମ ଦଶମୋଽଧ୍ୟାୟଃ ।୧୦।

—୦—

## ଏକାଦଶ ଅଧ୍ୟାୟ

ଜୈମିନି କହିଲେ—ଶାପଗ୍ରସ୍ତ ଶରଣାଗତ ସୁମୁଖ ପ୍ରଦକ୍ଷିଣ କରି ହାତ ଯୋଡ଼ି ଭଗବାନଙ୍କୁ ଜଣାଇଲା 'ଦେବାଧିଦେବ, ମୋର ଦୋଷ କ୍ଷମା କରନ୍ତୁ । ମୁଁ ଆପଣଙ୍କ ଦ୍ୱାରପାଳ ହୋଇ କପରି ରାକ୍ଷସ ଜାତିରେ ଜନ୍ମ ଗ୍ରହଣ କରିବି ? ଏହି ସାମାନ୍ୟ ଅପରାଧରେ ରାକ୍ଷସ ଜନ୍ମ ଲାଭ କରି ସେହି ଜନ୍ମରେ ଦେବତା ବ୍ରାହ୍ମଣ ଦ୍ୱେଷ କରି କି ଗତି ଲାଭ କରିବି ? ଜଗଦୀଶ, ଆପଣଙ୍କର ଆଦେଶରେ ଉଦ୍ଭୂତ ଦେବତାମାନେ ସ୍ୱର୍ଗ ଭୋଗ କରି ଅନ୍ୟମାନଙ୍କର ବଳି ପୂଜା ଗ୍ରହଣ କରି ତୃପ୍ତି ଲାଭ କରି କର୍ମାଧିକାରୀ ଓ ରାଗମୋହର ବଶବର୍ତ୍ତୀ ହୋଇ ନିଜ ନିଜ ଅଧିକାରରୁ ବିଚ୍ୟୁତ ହୋଇ ଅଛନ୍ତି । ସେହି ହେତୁ ମୁଁ ସେମାନଙ୍କୁ ବାରଣ କରିଥିଲି, ଅଧିକାରବଶତଃ ନୁହେଁ । ଅତଏବ କ୍ଷମା କରନ୍ତୁ ।' ସୁମୁଖର ବିଜ୍ଞପ୍ତି ଶୁଣି ଭଗବାନ୍ ବାସୁଦେବ ମନ୍ଦସ୍ମିତ ପ୍ରକାଶ କରି ସୁମୁଖ ଉପରେ କଟାକ୍ଷପାତ କରି କହିଲେ—ସୁମୁଖ, ଭୟ କର ନାହିଁ । ଦେବତାଙ୍କୁ ବାଧାଦେଲା ପରି ଜୟ ବିଜୟ ମଧ୍ୟ ସନକାଦିମହର୍ଷିଙ୍କୁ ବାଧା ଦେଇ ରାକ୍ଷସ ହୋଇ ଜାତ ହୋଇ ଅଛନ୍ତି ତିନିଜନ୍ମ ପରେ ସେମାନେ ମୁକ୍ତି ଲାଭ କରି ଆସି ଦ୍ୱାରପାଳ ହେବେ । ତୁ ମଧ୍ୟ କୁମାରରୂପେ ଜନ୍ମ ନେଇ ମୋର ଭକ୍ତ ହେବୁ । ସବୁବେଳେ ମୋର ନାମ ଜପ କରି ମୋତେ ଧ୍ୟାନ କରି ମୋର ଭକ୍ତମାନଙ୍କ ମଧ୍ୟରେ ଅଗ୍ରସ୍ଥାନ ଲାଭ କରିବୁ । ମୋର ଆଦେଶରେ ମୋର ସେବକ ହୋଇ ରହିବୁ । ବ୍ରହ୍ମାଙ୍କର ବରରେ ଗର୍ବିତ ଦେବତାମାନଙ୍କର କଣ୍ଟକ ସେହି ରାକ୍ଷସକୁ ମୁଁ ତୋର ସକାଶେ ଅଦ୍ଭୁତପୂର୍ବ ରୂପ ଧାରଣ କରି ସଂହାର କରିବି । ଦେବତା ଓ ବ୍ରାହ୍ମଣମାନଙ୍କର ବିରୋଧୀ ଦୈତ୍ୟମାନଙ୍କୁ ବଧ କରିବା-ସକାଶେ ମୁଁ ପ୍ରତିକଳ୍ପରେ ଅନେକ ଅବତାର ଗ୍ରହଣ କରେ । ବେଦ, ବିପ୍ର, ତପ, ଦେବତା, ଗାଈ, ଅଶ୍ୱତ୍ଥବୃକ୍ଷ, ଭକ୍ତ, ପୁଣ୍ୟତୀର୍ଥ, ଏହି ଆଠୋଟି ମୋର

ସ୍ୱରୂପ । ଏମାନଙ୍କୁ ବାଧା ଦେବା ଲୋକଙ୍କୁ ମୁଁ ବାଧା ଦଏ । ଏଥିରେ ସନ୍ଦେହ ନାହିଁ ଯେଉଁମାନେ ମୋର ଅଙ୍ଗ ନ ଜାଣି ସେମାନଙ୍କୁ ନିନ୍ଦା କରନ୍ତି, ମୁଁ ସେମାନଙ୍କୁ ଦଣ୍ଡ ଦେଇଥାଏ । ମହାତ୍ମାମାନେ ଅହେତୁକ ଶ୍ରେଷ୍ଠ କାମନା କରି ମୋର ସ୍ୱରୂପ ଏହି ଆଠୋଟିଙ୍କୁ ପୂଜା କରିଥାନ୍ତି । ଏହାଠାରୁ ଅଧିକ ସନ୍ମାର୍ଗ ଆଉ ନାହିଁ । ଯେଉଁ ଲୋକ ସମସ୍ତଙ୍କର ଅନ୍ତରାତ୍ମା ରୂପେ ଅବସ୍ଥିତ ମୋତେ ଏବଂ ମୋର ସ୍ୱରୂପ ଏହି ଆଠୋଟିରୁ ଗୋଟିକୁ ପୂଜା କରନ୍ତି, ସେ ତ୍ରିଜଗତରେ ମହାତ୍ମା ଓ ମହାଜ୍ଞାନୀ ବୋଲି ମୋର ଅଭିମତ । ଯେଉଁ ଲୋକ ମୋର ଶରୀର ରୂପୀ ଏହିମାନଙ୍କୁ ଶତ୍ରୁଭାବରେ ଦେଖେ, ସେ କେବେହେଲେ ମୋର ପ୍ରୀତିପାତ୍ର ହୋଇପାରିବ ନାହିଁ । ଯେଉଁ ଲୋକ ପ୍ରତିଦିନ ମୋତେ ପୂଜା କଲେ ମଧ୍ୟ ପ୍ରାଣୀମାନଙ୍କୁ ଦ୍ରୋହ କରେ, ସେ ଦୁରଭିମାନଗ୍ରସ୍ତ ମୀଚ ଓ ପରମଦ୍ରୋହୀ ବୋଲି ମୋର ଅଭିମତ । ମୋର ଅପକାର କରିବା ଲୋକକୁ ସୁଦ୍ଧା ମୁଁ ରକ୍ଷା କରିପାରେ, ମାତ୍ର ମୋର ଭକ୍ତମାନଙ୍କୁ ଦ୍ରୋହ କରି-ଥିବା ଲୋକଙ୍କୁ ମୁଁ କଦାପି ରକ୍ଷା କରେ ନାହିଁ । ଅତଏବ ତୁ ନିଷ୍ଠୁର ସ୍ୱଭାବପ୍ରକୃତ ରାକ୍ଷସ ଜାତିରେ ଜାତହେବୁ । ରାକ୍ଷସ ହେଲେ ମଧ୍ୟ ତୁ ଶ୍ରେଷ୍ଠ ହୋଇ ରହିବୁ ।' ଋଷିଗଣ, ସୁମୁଖଙ୍କୁ ଏହିପରି କହି ଦେବଦେବ ଭଗବାନ୍ ଅନ୍ତଃପୁରକୁ ଚଳେ ଗଲେ । ସୁମୁଖ ବିଷ୍ଣୁଭକ୍ତ ହେଲେ ମଧ୍ୟ ଭଗବାନଙ୍କ ଆଜ୍ଞାରେ ଅଧୋ-ଗାମୀ ହେଲା । ଏ ସମସ୍ତ ଦେଖି ସେବକମାନଙ୍କ ମଧ୍ୟରେ ତୁମୁଳ ହାହାକାର ଉଠିଲା । ସୁମୁଖର ଅଧଃପତନ ବଜ୍ରପାତ କରି ସମସ୍ତଙ୍କ ମନରେ ଭୟ ଜାତ କଲା ସୁମୁଖ ଦେବତା ଓ ବ୍ରାହ୍ମଣମାନଙ୍କର ବିରୋଧ କରି ବିଷ୍ଣୁଲୋକରୁ ଅଧୋ-ଭୁବନଗାମୀ ହେଲା । ସର୍ବଜଗତଜନମୁକ୍ତ ନିତ୍ୟମାନଙ୍କ ମଧ୍ୟ ଏପରି ଅଧଃ-ପାତ ଘଟିଥିବା ବେଳେ ଅନ୍ୟମାନଙ୍କ ବିଷୟରେ କଅଣ କହିବା ? ଭଗବଦ୍ଦର୍ଶନାର୍ଥୀ ବିଷ୍ଣୁଭକ୍ତମାନଙ୍କୁ ଦ୍ୱାରଦେଶରେ ଯେଉଁମାନେ ବାଧା ଦିଅନ୍ତି, ସେମାନେ ଅସୁର ଜାତିରେ ଅବଶ୍ୟ ଜନ୍ମ ଲାଭ କରନ୍ତି ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟ ବର୍ଣ୍ଣନଂ ନାମ ଏକାଦଶୋଽଧ୍ୟାୟଃ ।୧୧।



## ଦ୍ୱାଦଶ ଅଧ୍ୟାୟ

ଜୈମିନି କହିଲେ ପରେ ଦୈତ୍ୟରାଜ ହିରଣ୍ୟକଶିପୁଙ୍କ ଧର୍ମପତ୍ନୀଙ୍କର ଗର୍ଭରେ ଚିଦ୍ରୂପ ସୁମୁଖ ପ୍ରବେଶ କଲା । ତାର ଜନ୍ମଦିନ, ସୂର୍ଯ୍ୟ ଓ ଚନ୍ଦ୍ର ବିମଳ କାନ୍ତିରେ ପରିପୂର୍ଣ୍ଣ ହୋଇଥିଲେ । ଶୀତଳ ମନ୍ଦ ମାରୁତ ଧୀରେ ଧୀରେ ପ୍ରବାହିତ ହେଲା । ଦିଗମାନ ନିର୍ମଳ ହେଲେ. ଅନ୍ତଃପୁରର ପରିଚାରିକାଗଣ ଦୈତ୍ୟପତିଙ୍କୁ କୁମାର ଜନ୍ମ କଥା ଜଣାଇଲେ । କୁମାର ମୁଖ ଦର୍ଶନ ଉତ୍କଣ୍ଠାରେ ଦୈତ୍ୟପତି ସେହିକ୍ଷଣି ଅନ୍ତଃପୁରରେ ପ୍ରବେଶ କରି ପୁତ୍ରକୁ ଦେଖିଲେ । ପୁରୋହିତ ଜାତକର୍ମମାନ ସମ୍ପାଦନ କରି ପୁତ୍ରକୁ ପ୍ରହ୍ଲାଦ ବୋଲି ନାମ ଦେଲେ । ଶୁକ୍ଳ ପକ୍ଷରେ ଚନ୍ଦ୍ରକଳା ପରି ନବଜାତ ଶିଶୁ କ୍ରମେ କ୍ରମେ ବଢ଼ିବାକୁ ଲାଗିଲେ । ଆତ୍ମାରାମ ହେଲେ ମଧ୍ୟ ଜଡ଼ପରି ବାଲ୍ୟ ଚେଷ୍ଟାମାନ କରି ସ୍ତନପାନାଦି କରୁଥିଲେ । ଧାଈ ବାଳକର ପରିସ୍ଫୁଟ ସ୍ୱର ଦେଖି ମା ବାପ ଇତ୍ୟାଦି ଶବ୍ଦ ଶିଖାଇବାକୁ ଲାଗିଲା । ଦ୍ୱିଜଗଣ, ଧାଈର ସେ ସମସ୍ତ ମା ବାପ ଶବ୍ଦ ଶୁଣି ପ୍ରହ୍ଲାଦ ଲୋକମାନଙ୍କୁ ତତ୍ତ୍ୱ ବୁଝାଇବାକୁ ଯାଇ କହିଲେ—'ମା କିଏ ? ବାପ କିଏ ? ନନା ଭାଇ କିଏ ? ପ୍ରାଣୀମାନେ ସମସ୍ତ ନିଜ ନିଜ କର୍ମ ଅନୁସାରେ ନାନା ଯୋନିରେ ଜନ୍ମ ଗ୍ରହଣ କରନ୍ତି । ଏହି ଜଗତରେ ସର୍ବବ୍ୟାପକ ବିଷ୍ଣୁ ବାପା ଓ ଲକ୍ଷ୍ମୀ କେବଳ ମା । ଅନ୍ୟମାନେ ମା ବାପ ନୁହନ୍ତି ଲୋକମାନେ ବୃଥାରେ ବୃଥା ମୋହଗ୍ରସ୍ତ ହୋଇ ଭାବନ୍ତି କି କିଏ କାହାର ପୁତ୍ର ହୋଇ ପୂର୍ବ-ଜନ୍ମରେ ଜାତ ହୋଇଥିଲା ? ତତ୍ତ୍ୱଦର୍ଶୀମାନେ ବିଚାର ପୂର୍ବକ ଏ ସମସ୍ତ ବିଚାର କରି ଏହି ରକମ ମୋହରୁ ବିରତ ହୁଅନ୍ତି ।' ପ୍ରହ୍ଲାଦ ଏହିପରି କହି ଚିନ୍ତା କରି ମୌନ ଅବଲମ୍ବନ କରୁଥିଲେ । ବିଜ୍ଞାନାମୃତସମୁଦ୍ରରେ ଅବଗାହନ କରି ସବୁବେଳେ ତତ୍ତ୍ୱଚିନ୍ତାରେ ବ୍ୟସ୍ତ ରହୁଥିଲେ । ସ୍ତ୍ରୀମାନେ ଏହା ଶୁଣି ପିଲାଟା କଅଣ କହୁଛି ? ତାକୁ କିଏ ଏପରି ଶିଖାଇଛି ବୋଲି ବିଶେଷ ଆଶ୍ଚର୍ଯ୍ୟାନ୍ୱିତ ହେଉଥିଲେ । ଏପରି କେତେକାଳ ହୃଦୟ କମଳରେ ଭଗବାନ୍ ଗରୁଡ଼ଧ୍ୱଜଙ୍କୁ ଧ୍ୟାନ କରି ହିରଣ୍ୟକଶିପୁଙ୍କର କୁମାର ପ୍ରହ୍ଲାଦ ଭ୍ରମଣ କରୁଥିଲେ । ଦ୍ୱିଜଗଣ, ପ୍ରହ୍ଲାଦ ଦୈତ୍ୟବାଳକମାନଙ୍କୁ ଖେଳିବା ସକାଶେ ପାଖକୁ ଡାକି ତତ୍ତ୍ୱୋପଦେଶ ଦେଇ ନିର୍ଜନରେ ଏହିପରି କହୁଥିଲେ—'ବାଳକଗଣ, ଆମେମାନେ ବାଲିରେ ଘର କରି ଖେଳିଲା ପରି ଭଗବାନ୍ ନାରାୟଣ ଏ ସମସ୍ତ ଜଗତ ସୃଷ୍ଟି କରି ପରିପାଳନ କରୁଅଛନ୍ତି । ଅତଏବ ତାଙ୍କର ସୃଷ୍ଟ ପୁତ୍ରମାନେ ବୁଦ୍ଧିମାନ୍ ହୋଇ

ଉପାସନା କରି ସକଳ ସିଦ୍ଧି ଲାଭ କରନ୍ତି । ଭଗବାନ୍ ନାରାୟଣ ସଚ୍ଚିତ୍ସ୍ୱରୂପ, ସର୍ବବ୍ୟାପକ, ସମଦର୍ଶୀ ଆତ୍ମାରାମ, ଆଶ୍ରିତବତ୍ସଳ ଓ ବାଞ୍ଛିତଫଳଦାତା । ତାଙ୍କର ଉପାସନା ସହଜ । ସୁଖ, ଦୁଃଖ ଓ ଅପମାନରେ ଯେଉଁ ଲୋକ ଅନ୍ୟ-ମାନଙ୍କୁ ନିଜ ପରି ଦେଖନ୍ତି, ସେମାନେ ବିଷ୍ଣୁଙ୍କର ପ୍ରିୟପାତ୍ର । ଯେଉଁଲୋକ କାୟ-ମନୋବାକ୍ୟରେ ସମସ୍ତକାର୍ଯ୍ୟ ତାଙ୍କଠାରେ ସମର୍ପଣ କରେ, ସେ ପ୍ରକୃତ ଉପାସକ । ଯେଉଁ ଲୋକ ପୃଥିବୀର ମାୟାରେ ପଡ଼ି, ଇଷ୍ଟାନିଷ୍ଟରେ ଲିପ୍ତ ହୁଏ ନାହିଁ, ଦୁଃଖ ଓ ସୁଖର ଦ୍ୱନ୍ଦ୍ୱରେ ରହି ଭଗବାନଙ୍କର ପ୍ରକୃତ ଉପାସକ ହୁଏ, ଯେଉଁ ଲୋକ ଯେ କୌଣସି ଜନ୍ତୁକୁ ଯେଉଁ କୌଣସି କାରଣ ବଶତଃ ଭଲପାଏ, ସେ ବିଷ୍ଣୁ ଭକ୍ତ ହୁଏ । ସର୍ବବ୍ୟାପୀ ଦେବଦେବ ବିଷ୍ଣୁଙ୍କୁ ଧ୍ୟାନ କଲା ଲୋକ ସର୍ବଦୋଷ ବିରହିତ ହୋଇ ଯୋଗୀଶ୍ୱରମାନଙ୍କର ପ୍ରାପ୍ୟ ସ୍ଥାନ ଲାଭ କରେ ।" ଏହିପରି ପ୍ରବୋଧରେ କେତେକ ଦୈତ୍ୟବାଳକ ଅହଂକାର ଶୂନ୍ୟ ଓ ତତ୍ତ୍ୱଜ୍ଞ ହୋଇ ବିଷ୍ଣୁଙ୍କର ଭକ୍ତ ହେଲେ । ଆଉ ଅହଂକାରୀ କେତେକ ବାଳକ କ୍ରୀଡ଼ାରେ ଉନ୍ମତ୍ତ ହୋଇ ପ୍ରହ୍ଲାଦଙ୍କର ଉପଦେଶମାନ ହାସ୍ୟରେ ଉଡ଼ାଇ ଦେଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟ ବର୍ଣ୍ଣନଂ ନାମ ଦ୍ୱାଦଶୋଽଧ୍ୟାୟଃ ।୧୨।

—o—

# ତ୍ରୟୋଦଶ ଅଧ୍ୟାୟ

ଜୈମିନି କହିଲେ—କ୍ରମେ କ୍ରମେ ପ୍ରହ୍ଲାଦ ତୃତୀୟ ବର୍ଷରେ ପଦାର୍ପଣ କଲେ । ସେ ପିଲମାନଙ୍କ ସହିତ ଖେଳୁଥିବା ସମୟରେ ମଧ୍ୟ ବିଷ୍ଣୁଙ୍କ ଧ୍ୟାନରେ ନିମଗ୍ନ ହୋଇ ଯାଉଥିଲେ । ଦୈତ୍ୟରାଜ ହିରଣ୍ୟକଶିପୁ ତାହା ଦେଖି ପାରିଲେ । ଭାବିଲେ ସେ ସାଙ୍ଗମାନଙ୍କ ସହିତ ଖେଳୁଥିବା ସମୟରେ ଧ୍ୟାନ ମଗ୍ନ ହୋଇ ଆମ୍ଭାରାମ ପରି ଦେଖାଯାଉଅଛି । ଏକି ମାୟା ! ଏ ଯୋଗ ପ୍ରଭୃତି ଅଭ୍ୟାସ କରିନାହିଁ, ତପସ୍ୟା କରି ନାହିଁ, ଦେଖିବାକୁ ଗଲେ ମୂଢ଼ମତି ଏକ ବାଳକ, ନିଜର ହିତାହିତ ଜ୍ଞାନ ନାହିଁ । ଗୁରୁଙ୍କ ପାଖରେ ରହିଲେ ଠିକ୍ ହୋଇଯିବ । ଯେ ଅନ୍ୟାନ୍ୟ ଆଲୋଚନା ଛାଡ଼ି ଗୁରୁଙ୍କର ବାକ୍ୟ ଶୁଣେ, ସେ ଶୀଘ୍ରକାଳ ପରି ଜଡ଼ତା ଦୂର କରେ । ଏହିପରି ଆଲୋଚନା କରି ଦୈତ୍ୟରାଜ ହିରଣ୍ୟକଶିପୁ ପୁତ୍ରର ସକଳ ସଂସ୍କାରକରି ମନ୍ତ୍ରୀପୁତ୍ରଙ୍କ ସହିତ ଗୁରୁଙ୍କ ପାଖକୁ ପଠାଇ ଦେଲେ । ଦୈତ୍ୟମାନଙ୍କର ପୁରୋହିତ ଶୁକ୍ରଙ୍କର ପୁତ୍ର ଚଣ୍ଡମାର୍କ ଶୁଭ ସମୟରେ ତାଙ୍କର ବିଦ୍ୟାଭ୍ୟାସ କରାଇଲେ । 'ଓଁ ନମଃ ଶିବାୟଃ' ଲେଖି ପଢ଼ ବୋଲି ଗୁରୁ ଆଦେଶ ଦେଲେ । ପ୍ରହ୍ଲାଦ ସେ ସମସ୍ତ ଅକ୍ଷର ଲିଭାଇ ଦେଇ 'ଓଁ ନମୋ ନାରାୟଣାୟ' ବୋଲି ଲେଖି ପୂର୍ବଜନ୍ମର ଜ୍ଞାନ ବଳରେ ପଢ଼ିବାକୁ ଲାଗିଲେ । ପ୍ରହ୍ଲାଦ ସେପରି ଲେଖି ପଢ଼ିବା ଦେଖି ଗୁରୁ ଚଣ୍ଡମାର୍କ ବିଶେଷ କ୍ରୋଧ ପ୍ରକାଶ କରି କହିଲେ—ମୁଁ କଣ ଉପଦେଶ ଦେଉଛି, ଆଉ ତୁମେ କଅଣ କହୁଛ ? ଏହି ଶବ୍ଦ ଶୁଣିଲେ ତୁମର ପିତା ଦୈତ୍ୟରାଜ ତୁମକୁ ଓ ଆମକୁ ମାରିଦେବେ, ଏପରି ଶବ୍ଦ ତୁମେ କାହିଁକି କହୁଅଛ ? ରାଜକୁମାର ତୁମକୁ ଏହି ଉପଦେଶ କିଏ ଦେଇଛନ୍ତି, ପ୍ରକାଶ କର । ଶୁଣିବାକୁ ମୋର କୁତୂହଳ ହେଉଅଛି ।' ପ୍ରହ୍ଲାଦ ଦ୍ୱିଜବର୍ଯ୍ୟ ଗୁରୁଙ୍କର ସେହି ଆଦେଶ ଶୁଣି ଧୈର୍ଯ୍ୟ ସହକାରେ ହାତ ଯୋଡ଼ି ଜଣାଇଲେ "ପୂର୍ବଜନ୍ମରେ ପ୍ରଭୁ ବିଷ୍ଣୁ ମୋତେ ଯେଉଁ ଜ୍ଞାନ ଉପଦେଶ ଦେଇଥିଲେ, ତାହାରି ଫଳରେ ମୁଁ ଏପରି କହୁଅଛି । ଅନ୍ୟମାନଙ୍କ ପରି ମୋତେ ଉପଦେଶ ଦେବା ଦରକାରନାହିଁ । 'ନମଃ ଶିବାୟ' ଏହି ପଞ୍ଚାକ୍ଷରୀ ମନ୍ତ୍ର ଜପ କରି କରି ପ୍ରାଣତ୍ୟାଗ କରୁଥିବା ମନୁଷ୍ୟମାନେ ମନ୍ତ୍ର-ପରେ ଯେପରି ଜଳ ଅଗ୍ନି ପ୍ରଭୃତି ଅଷ୍ଟମୂର୍ତ୍ତି ସ୍ୱରୂପ ଶିବ ରୂପ ଲାଭ କରନ୍ତି ସେହିପରି ଓଁ 'ନମୋ ନାରାୟଣାୟ' ଏହି ମନ୍ତ୍ର ମଧ୍ୟ ଜପ କରି ପ୍ରାଣତ୍ୟାଗ କରୁଥିବା ମନୁଷ୍ୟମାନେ ନାରାୟଣ ସ୍ୱରୂପ ଲାଭ କରନ୍ତି । 'ନାରାୟଣ'

ଶବ୍ଦ ଗୁରୁବେଦର ସାରସ୍ୱରୂପ ଓ ଧର୍ମ, ଅର୍ଥ, କାମ, ମୋକ୍ଷରୂପ ଗୁରୋଟି ପୁରୁଷାର୍ଥ ସାଧକ ଚରାଚରସ୍ୱରୂପ ଏ ସମସ୍ତ ଭୂମଣ୍ଡଳ ନାରାୟଣଙ୍କ ଦ୍ୱାରା ସୃଷ୍ଟ ହୋଇଅଛି । ବ୍ରହ୍ମା ମଧ୍ୟ ନାରାୟଣଙ୍କଠାରୁ ଜାତ । ସେହି ଆଦ୍ୟ ପୁରୁଷ ନାରାୟଣ ସର୍ବବ୍ୟାପକ ଓ ଆଶ୍ରିତଦୁଃଖ ନାଶକ । ସେହି ନାରାୟଣଙ୍କୁ ଛାଡ଼ି ଅମଙ୍ଗଳରୂପୀ ରୁଦ୍ରଙ୍କୁ ପ୍ରାଜ୍ଞମାନେ କାହିଁକି ପୂଜା କରିବାକୁ ଯିବେ ? ଏହି ବିଷୟ କାହାରି ହେଲେ ଅଜ୍ଞାତ ନାହିଁ । ଆପଣ ଗୁରୁ ହେଲେ ମଧ୍ୟ ଯଥାର୍ଥତତ୍ତ୍ୱ ଜାଣିପାରି ନାହାନ୍ତି-ଏଥିରେ କୌଣସି ସନ୍ଦେହ ନାହିଁ । ନାରାୟଣ ପରମାତ୍ମା, ପ୍ରକୃତି ଓ ଜୀବାତ୍ମାର ପ୍ରଭୁ । ଆପଣ ନାରାୟଣଙ୍କ ଠାରୁ ଜାତ ହୋଇ ଅଛନ୍ତି । ଅତଏବ ନାରାୟଣ ସ୍ୱରୂପ । ସେହି ଅନନ୍ତଜ୍ଞାନମୟ ଦେବଦେବ ଭଗବାନଙ୍କୁ ଆପଣ ସର୍ବଦା ସେବା କରନ୍ତୁ । ଯେଉଁ ଲୋକ ବିଶ୍ୱ ବ୍ରହ୍ମାଣ୍ଡର ଅଧିନାୟକ ସର୍ବବ୍ୟାପୀ ନାରାୟଣଙ୍କୁ ଧ୍ୟାନ ନ କରି ଅନ୍ୟ ଦେବତାମାନଙ୍କୁ ସେବା କରେ, ସେ ସମୀପସ୍ଥ ଗଙ୍ଗା ନଦୀ ଛାଡ଼ି ଦୂରସ୍ଥିତ ମରୀଚିକାକୁ ପାନ କରିବାକୁ ଯାଉଥିବା ତୃଷାର୍ତ୍ତ ପରି ମୋହଗ୍ରସ୍ତ ଓ ଅଦୂରଦର୍ଶୀ । ରୂପବର୍ଜିତ ମାନବ ଲୋକ-ରଞ୍ଜକ ଅଳଙ୍କାରମାନ ଧାରଣ କଲେ ଯେପରି ଶୋଭାପାଏ ନାହିଁ, ବିଷ୍ଣୁଭକ୍ତି ବର୍ଜିତ ଲୋକ ମଧ୍ୟ ଜାତି, ମତ, ଶାସ୍ତ୍ର, ଜପ ଓ ତପରେ ମଧ୍ୟ ଶୋଭାପାଏ ନାହିଁ । ଜ୍ଞାନବାନ୍ ଆପଣ ଏ ସମସ୍ତ ଜାଣି ମଧ୍ୟ ମୂଢ଼ମତି ଦୈତ୍ୟମାନଙ୍କୁ ଉପଦେଶ ଦେବା ଉଚିତ ନୁହେଁ । ସତ୍ତ୍ୱଗୁଣ ପ୍ରଧାନ ନାରାୟଣଙ୍କୁ ତମୋଗୁଣ-ଭୂୟିଷ୍ଠ ଦୈତ୍ୟମାନେ ପୂଜା କରିବାକୁ ଅର୍ହ ନୁହନ୍ତି ବୋଲି ଆପଣ ଉପଦେଶ ଦେଉଛନ୍ତି । ତମୋଗୁଣଭୂୟିଷ୍ଠ ଅହଙ୍କାରପ୍ରବଣ ରାକ୍ଷସମାନେ ତମୋଗୁଣାବଲମ୍ବୀ ରୁଦ୍ରଙ୍କୁ ଆରାଧନାକରି ମନୋବାଞ୍ଛିତ ବରମାନ ପାଉଅଛନ୍ତି । ସେହି ହରିଭକ୍ତ ରାକ୍ଷସମାନଙ୍କୁ ସତ୍ତ୍ୱଗୁଣ ପ୍ରଧାନ ବିଷ୍ଣୁ ନିଜେ ସଂହାର କରୁଅଛନ୍ତି । ଲୋକମାନେ ଅନ୍ୟାନ୍ୟ ଦେବତାଙ୍କୁ ଆରାଧନା କରି ଯେତେ ଯେତେ ବର ପାଉଅଛନ୍ତି, ସେ ସମସ୍ତ ବର ସର୍ବଫଳପ୍ରଦ ବିଷ୍ଣୁ ଅନାୟାସରେ ଦେଇଥାନ୍ତି । ତତ୍ତ୍ୱଦର୍ଶୀ ଆପଣ ମୋତେ ନାନାବିଧ ଉପଦେଶ ଦେଉଥିଲେ ମଧ୍ୟ ନାରାୟଣ ଶବ୍ଦ ଅପେକ୍ଷା ଅଧିକ ଶବ୍ଦ କହୁ ନାହାନ୍ତି । ମୁଁ କଅଣ କରିବ ?' ପ୍ରହ୍ଲାଦ ଏହିପରି କହି ଗୁରୁଙ୍କୁ ନମସ୍କାର କରି ବିଷ୍ଣୁଙ୍କର ମାୟା ଜାଣିବା କାହାରି ସାଧ୍ୟ ବୋଲି ଜୋରରେ କହି ତୁନି ହେଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ରମହାତ୍ମ୍ୟ ବର୍ଣ୍ଣନଂ ନାମ ତ୍ରୟୋଦଶୋଽଧ୍ୟାୟଃ ।୧୩।

# ଚତୁର୍ଦ୍ଦଶ ଅଧ୍ୟାୟ

ଜୈମିନ କହିଲେ—ଦୈତ୍ୟପୁରୋହିତ ଚଣ୍ଡମାର୍କ ପ୍ରହ୍ଲାଦଙ୍କର ବାକ୍ୟ ଶୁଣି ପ୍ରକୁପିତ ହୋଇ କେତେକ ବାଳକଙ୍କୁ ଦଣ୍ଡ ଦେଇ ପ୍ରହ୍ଲାଦଙ୍କୁ ପିତାଙ୍କ ସମୀପକୁ ନେଇଗଲେ । ହିରଣ୍ୟକଶିପୁ ଦୂରରୁ କୁମାର ପ୍ରହ୍ଲାଦଙ୍କୁ ଗୁରୁଙ୍କ ସହିତ ଆସୁଥିବା ଦେଖି 'ଆସ' 'ଆସ' ବୋଲି ଉଚ୍ଚ ସ୍ୱରରେ ଆହ୍ୱାନ କଲେ । ପ୍ରହ୍ଲାଦ ବିନୟ ପୂର୍ବକ ପିତାଙ୍କ ଚରଣରେ ବନ୍ଦନ କଲେ । ଦୈତ୍ୟରାଜ ହିରଣ୍ୟକଶିପୁ ପୁତ୍ରକୁ ଆଦର ସହ ଆଲିଙ୍ଗନ କରି ନିଜ କୋଳରେ ବସାଇ ଗୁରୁଙ୍କଠାରୁ କି କି ବିଦ୍ୟା ଶିକ୍ଷା କଲ ବୋଲି ପଚାରିଲେ । ପ୍ରହ୍ଲାଦ କହିଲେ— 'ଦୈତ୍ୟେଶ୍ୱର, ବ୍ରହ୍ମବାଚକ ବର୍ଣ୍ଣ କେବଳ ଅକ୍ଷର ପଦବାଚ୍ୟ । ଅନ୍ୟାନ୍ୟ ବର୍ଣ୍ଣମାନ ବିନାଶଶୀଳ ବୋଲି ବେଦମାନଙ୍କର ମତ । ଶବ୍ଦରୂପୀ ବର୍ଣ୍ଣ ନଷ୍ଟ ହୋଇଥାଏ, ମାତ୍ର ଶବ୍ଦଦ୍ୱାରା ବୋଧ ବସ୍ତୁ ନଷ୍ଟ ହୁଏ ନାହିଁ । ସମସ୍ତ ଭୂତ ନଷ୍ଟ ହୋଇଯାଏ, ମାତ୍ର କୂଟସ୍ଥ କେବେହେଲେ ନଷ୍ଟ ହୁଏ ନାହିଁ ବୋଲି ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଅଛି । ଏହେତୁ କୂଟସ୍ଥ ବସ୍ତୁ ଅବିନାଶୀ ଓ ସର୍ବୋତ୍ତମ । ସେହି ବସ୍ତୁ କେବଳ ଅକ୍ଷର, ପ୍ରଣବ ରୂପୀ ଅକ୍ଷର ବୋଲି କହନ୍ତି । ଜ୍ଞାନବାନ୍ ବ୍ୟକ୍ତି ଏହି ପ୍ରଣବରୂପ ଅକ୍ଷର ଜପ କରି ସନାତନ ପରଂବ୍ରହ୍ମକୁ ଧ୍ୟାନ କରି ନିତ୍ୟପ୍ରଦେଶରେ ପ୍ରବେଶ କରି ସାରୂପ୍ୟ ଲାଭ କରେ । ଇତର ଅକ୍ଷରମୟ ମନ୍ତ୍ର ଦିନରାତି ଜପ କଲେ—ଇହଲୋକରେ ଓ ପରକାଳରେ ବିନାଶଶୀଳ ପଦମାନ ମିଳିଥାଏ । ଏହେତୁ ସେହି ଶବ୍ଦମାନ ପରିତ୍ୟାଗ କରି ଅଷ୍ଟସିଦ୍ଧିପ୍ରଦ ପ୍ରଣବାଦି 'ନମୋ ନାରାୟଣାୟ' (ଓଁ ନମୋ ନାରାୟଣାୟ) ମନ୍ତ୍ରରାଜ ସର୍ବଦା ଜପ କରିବା ଉଚିତ । ଆମର ଗୁରୁ ଠିକ୍ ଏହାର ବିପରୀତ ଉପଦେଶ ଦେଉଅଛନ୍ତି । ଅନ୍ୟ ଦେବତାମାନଙ୍କୁ ପରିହାର କରି ପରମାତ୍ମ ରୂପୀ ନାରାୟଣଙ୍କୁ ଧ୍ୟାନ କର ବୋଲି ଉପଦେଶ ଦେବା ଗୁରୁ ଯଥାର୍ଥରେ ଗୁରୁପଦବାଚ୍ୟ ଓ ଶ୍ରେଷ୍ଠ । ନ୍ୟାୟମୀମାଂସାଦି ଶାସ୍ତ୍ରପଠନ ଫଳରେ କେତେକ କେବଳ ଉଦର ପୋଷଣ ନିମନ୍ତେ ଚେଷ୍ଟା କରୁଅଛନ୍ତି । ମିଥ୍ୟାମାର୍ଗ ଉପଦେଶ ଦେବା ବ୍ୟକ୍ତି କେବଳ ଉପାଧ୍ୟାୟପଦବାଚ୍ୟ ।' ପ୍ରହ୍ଲାଦ ଏହା କହି ତୁନି ହେଲେ । ହିରଣ୍ୟକଶିପୁ ପ୍ରହ୍ଲାଦଙ୍କର ବାକ୍ୟମାନ ଶୁଣି କ୍ରୋଧରେ ନେତ୍ର ଲାଲ କରି ଘୃତାହୁତିରେ ଅଗ୍ନି ପରି ଜଳିଉଠିଲେ । ପାର୍ଶ୍ୱରେ ବସିଥିବା ମନ୍ତ୍ରିସାମନ୍ତାଦି ଓ ଗୁରୁ ପୁତ୍ର ଚଣ୍ଡମାର୍କଙ୍କୁ ଦେଖି, ପୁଅକୁ ନିଜ କୋଳରୁ ଦୂରକୁ ଫିଙ୍ଗିଦେଇ କହିଲେ—'ଏହି ବାଳକର କଥାବାର୍ତ୍ତା,

ଆଗୁର ବ୍ୟବହାର ଆପଣମାନେ ତ ଶୁଣୁ ଅଛନ୍ତି ? ଦୁର୍ମତି ବାଳକ ବିଷ୍ଣୁଭକ୍ତ ହୋଇ ଏ ପର୍ଯ୍ୟନ୍ତ ଅଶ୍ରଦ୍ଧାପୂର୍ବ ବାକ୍ୟମାନ କହୁଅଛି । ଏ ସମସ୍ତର ଉଦ୍ଦେଶ୍ୟ କଅଣ ? କାହାର ଶିକ୍ଷାରେ ଏ ଏପରି କହୁଅଛି ? ବଡ଼ ଆଶ୍ଚର୍ଯ୍ୟ ବୋଧ ହେଉଅଛି । ଏହା ଗୁରୁଙ୍କର ଉପେକ୍ଷାର ଫଳ ? ନା ତାର ବୁଦ୍ଧି ବିପର୍ଯ୍ୟୟର ଫଳ । ତାର ଇଚ୍ଛାନୁସାରେ କହୁଥିଲା ବେଳେ କାହିଁକି ଦଣ୍ଡ ଦିଆଯାଇ ନାହିଁ ? ଶିଷ୍ୟ,-ପୁତ୍ର-ଏମାନଙ୍କୁ ଲାଳନା କରିବାଦ୍ୱାରା ବହୁତ ଦୋଷ ଘଟେ, ତାଡ଼ନା କରିବା-ଦ୍ୱାରା ବିଶେଷ ଉପକାର ହୁଏ ବୋଲି ପଣ୍ଡିତମାନେ କହିଅଛନ୍ତି ।' ପ୍ରହ୍ଲାଦ ପିତାଙ୍କର ଭୟଙ୍କର ମୁଖ ଦେଖି ସସ୍ମିତ ବଦନରେ କହିଲେ—'ପିତଃ, ଦଣ୍ଡଦ୍ୱାରା ଲୋକମାନଙ୍କର ଭୟ ଉତ୍ତମ ଗୁଣ ହୁଏ ବୋଲି ଆପଣ ଭାବୁ ଅଛନ୍ତି ? ଏହି ସଂସାରରେ ଉତ୍ପନ୍ନ ବ୍ୟକ୍ତିମାନଙ୍କର ଗୁଣମାନ ସହଜ । ସତ୍ତ୍ୱ, ରଜ ଓ ତମ ଏହି ତିନୋଟି ପ୍ରକୃତିର ଗୁଣ ନିଜ ନିଜ ପୂର୍ବାର୍ଜିତ କର୍ମାନୁସାରେ ମନୁଷ୍ୟ ଲାଭ କରିଥାଏ । ଜ୍ଞାନବିଜ୍ଞାନର କାରଣ ସତ୍ତ୍ୱଗୁଣ ମନୁଷ୍ୟମାନଙ୍କର ସୁଖ ଜନ୍ମାଇ ଥାଏ, ରଜୋଗୁଣ ରାଗ-ତୃଷ୍ଣା ବର କାରଣ ନିଷ୍କାକଳାଙ୍କ ଜନ୍ମାଇ ଥାଏ ଏବଂ ତମୋଗୁଣ ଅଜ୍ଞାନ ଜାତ କରାଇ ମୋହର କାରଣ ହୋଇଥାଏ । ଏହି-ଗୁଣମାନଙ୍କର ବିକାରରେ ଗ୍ରସ୍ତ ନ ହେବା ମୁକ୍ତିର କାରଣ ଓ ସମସ୍ତ ସଂସାର-ତ୍ୟାଗର ସାଧକ ହୋଇଥାଏ । ବିଷ୍ଣୁଭକ୍ତମାନେ ସୁଖଦୁଃଖମୟ ପ୍ରାଣୀମାନଙ୍କୁ ନିଜ ରୂପରେ, ଦେଖନ୍ତି, ରାଜସ ବ୍ୟକ୍ତିମାନେ ରାଗ, ଲୋଭ ମଦମତ୍ତ ହୋଇ ପ୍ରାଣୀମାନଙ୍କୁ ଶତ୍ରୁ, ମିତ୍ର ଓ ଉଦାସୀନ ରୂପେ ଦେଖନ୍ତି ଏବଂ ତାମସ ବ୍ୟକ୍ତିମାନେ ଉତ୍ତମଗୁଣ ବିରହିତ ହୋଇ ଚୌର୍ଯ୍ୟ, ପିଶୁନତ୍ୱ, ପରହିଂସା ପ୍ରଭୃତି ଅକାର୍ଯ୍ୟମାନ କରି ନରକଗାମୀ ହୁଅନ୍ତି । ଏହି ତିନିଗୁଣର ଦୂରରେ ଅବସ୍ଥିତ ଗୁଣାତୀତ ପରମାତ୍ମାଙ୍କୁ ଅନନ୍ୟ ଭକ୍ତିସହ ଆରାଧନା କରିବା ବ୍ୟକ୍ତିମାନେ ଉତ୍ତମ ଗତି ଲାଭ କରନ୍ତି । ଅତଏବ ହେ ପିତଃ, ଆପଣ ଗୁଣତ୍ରୟାତୀତ ବିଷ୍ଣୁଙ୍କଠାରେ ବୈରଭାବ ତ୍ୟାଗ କରି ସର୍ବଭୂତ ସମଦର୍ଶୀ ଓ ମଙ୍ଗଳମୟ ହୁଅନ୍ତୁ' ଏହା ପ୍ରହ୍ଲାଦ ବିନୟ ସହକାରେ ପିତାଙ୍କୁ କହି ଦୁର୍ମାର୍ଗଗାମୀ ପିତାଙ୍କର କୋପ ବଢ଼ୁଥିବା ଦେଖି ତୂଷ୍ଣୀ ହୋଇ ରହିଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟ ବର୍ଣ୍ଣନଂ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

—o—

# ପଞ୍ଚଦଶ ଅଧ୍ୟାୟ

ଜୈମିନି—ହିରଣ୍ୟକଶିପୁ କ୍ରୋଧରେ ହାତ ଟେକି ଓ ଦାନ୍ତ କାମୁଡ଼ି ରାକ୍ଷସ ଭଟମାନଙ୍କୁ ଡାକି କହିଲେ—'ଶ୍ରେଷ୍ଠ ରାକ୍ଷସଗଣ, ମୋର ଆଜ୍ଞାରେ ଏହାକୁ ଶୀଘ୍ର ଦଉଡ଼ିରେ ବାନ୍ଧି କଷାଘାତ କର । ଏ ବାଳକ, ରାଜପୁତ୍ର—ଆମ୍ଭେମାନେ କିପରି ଦଣ୍ଡ ଦେବୁ ବୋଲି ଶଙ୍କା କର ନାହିଁ ।' ରାକ୍ଷସ ଭଟ-ମାନେ ସେପରି ଆଜ୍ଞା ପାଇ ବିଳମ୍ବ ନ କରି ପ୍ରହ୍ଲାଦଙ୍କୁ ଦଉଡ଼ିରେ ବାନ୍ଧି କଷାରେ ତାଡ଼ନ କରିବାକୁ ଲାଗିଲେ । ମଧ୍ୟେ ମଧ୍ୟେ ଦୈତ୍ୟରାଜଙ୍କୁ ଦେଖି ଦେଖି ବାରମ୍ବାର ଦୈତ୍ୟପତିର ଆଜ୍ଞା ପାଇ ବିଶେଷ କଷ୍ଟ ଦେଇ କଷାରେ ଭୟଙ୍କର ଭାବରେ ତାଡ଼ନ କଲେ ଓ ନାନା ପ୍ରକାର ଦଣ୍ଡ ଦେଲେ । ପ୍ରହ୍ଲାଦ ସେମାନଙ୍କ ଦ୍ୱାରା ନାନା ପ୍ରକାରେ ଦଣ୍ଡିତ ହେଲେ ମଧ୍ୟ ହୃଦୟରେ ଅନନ୍ତମୟ ଆଶ୍ରିତବତ୍ସଳ ବିଷ୍ଣୁଙ୍କୁ ଏକାଗ୍ରଚିତ୍ତରେ ଧ୍ୟାନ କରି କରି ବାହ୍ୟ ବିଷୟ ପାସୋରି ଯାଇ ହସ୍ତୀ ସୁବାସିତ ପୁଷ୍ପମାଳାରେ ତାଡ଼ିତ ହେଲାପରି ମନେ କଲେ ସମସ୍ତ କଷା ପଥର ବନ୍ଧରେ ବାଜିଲା ପରି ଛିନ୍ନବିଚ୍ଛିନ୍ନ ହୋଇଗଲା । ରାକ୍ଷସ-ଭଟମାନେ ନିତାନ୍ତଶ୍ରାନ୍ତ ହୋଇ ଚିତ୍ରାର୍ପିତ ପ୍ରତିମା ପରି ରହିଗଲେ । ସେ ଅବସ୍ଥାରେ ପ୍ରହ୍ଲାଦଙ୍କୁ ଦେଖି ହିରଣ୍ୟକଶିପୁ ଆଶ୍ଚର୍ଯ୍ୟାନ୍ୱିତ ହୋଇ କ୍ରୋଧରେ ଭଟମାନଙ୍କୁ କହିଲେ । "ଏହି ଦୁଷ୍ଟମତି ବିବେଧୀ ବାଳକକୁ ଶୂଳ ଓ ଖଡ୍ଗ-ମାନଙ୍କରେ ଇଚ୍ଛାନୁସାରେ ନିର୍ଦ୍ଦୟଭାବେ ତାଡ଼ନ କର । ସମସ୍ତ ଶରୀର ଟିକି ଟିକି କରି କାଟିହୋଇ ପ୍ରାଣତ୍ୟାଗ କରୁ । କଷାଘାତରେ ଏହାର କୌଣସି ଅନିଷ୍ଟ ଘଟିନାହିଁ । ଆଖି ବୁଜି ନିଷ୍ଠୁର ଋଷିପରି ପ୍ରକାଶ ପାଉଛି ।" ରାକ୍ଷସ ଭଟମାନେ ହିରଣ୍ୟକଶିପୁଙ୍କର ସେହି ଦାରୁଣ ଆଦେଶ ଶୁଣି ନାନା ପ୍ରକାର ଆୟୁଧରେ ନିଷ୍ଠୁର ପ୍ରହ୍ଲାଦଙ୍କୁ ନାନା ପ୍ରକାର ଦଣ୍ଡ ଦେବାକୁ ଲାଗିଲେ । ଖଡ୍ଗ, ଶୂଳ, କୁନ୍ତ, କଟାହ ପ୍ରଭୃତି ଆୟୁଧରେ ପ୍ରହ୍ଲାଦଙ୍କର କଣ୍ଠ, ହସ୍ତ, ପଦ ପ୍ରଭୃତି ଅଙ୍ଗମାନଙ୍କୁ ହାଣି, ଫୋଡ଼ି ପୀଡ଼ା ଦେଲେ ମଧ୍ୟ ପ୍ରହ୍ଲାଦ କୌଣସି ବାଧା ଅନୁଭବ କଲେ ନାହିଁ । କେବଳ ସମସ୍ତ ଆୟୁଧ ପଟଚାଘାତରେ ଖଣ୍ଡ ଖଣ୍ଡ ହେଲା ପରି ଖଣ୍ଡ ବିଖଣ୍ଡ ହୋଇ ଓଲଟି ଦୈତ୍ୟଭଟମାନଙ୍କର ଶରୀରରେ ପଡ଼ି ସେମାନଙ୍କୁ ଉତ୍କ୍ରାନ୍ତ କରିଦେଲା । ସେମାନେ ଆଘାତ ଫଳରେ ଭୟଙ୍କର ପୀଡ଼ା ପାଇଲେ ଓ ପ୍ରହ୍ଲାଦଙ୍କର ତେଜରେ ଜଳିପଡ଼ି ଇତସ୍ତତଃ ପଳାୟନ କଲେ । ହିରଣ୍ୟ-କଶିପୁ ସେମାନଙ୍କୁ ଦଗ୍ଧଶରୀରରେ ପଳାଉଥିବା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ

ନିଜପ୍ରୟତ୍ନ ବ୍ୟର୍ଥ ହେବା ହେତୁ ଦୁଇଗୁଣ କ୍ରୋଧରେ ଜଳି ଉଠିଲେ । ଭକ୍ତ ପ୍ରହ୍ଲାଦ ସର୍ବବ୍ୟାପୀ ବିଷ୍ଣୁଙ୍କୁ ଧ୍ୟାନ କରି କରି ଦୈତ୍ୟମାନଙ୍କର ଦୁରବସ୍ଥା ଦେଖି ପ୍ରଜ୍ୱଳିତ ଅଗ୍ନି ପରି ତେଜସ୍ୱୀନ୍ ଦେଖା ଯାଉଥିଲେ । ହିରଣ୍ୟକଶିପୁ ଦିଗନ୍ତ ଅବସ୍ଥିତ ଦିଗ୍‌ଗଜମାନଙ୍କୁ ଡକାଇ ଆଜ୍ଞାଦେଲେ 'କରୀନ୍ଦ୍ରଗଣ ତୁମ୍ଭେମାନେ ସମସ୍ତେ ମିଳିତ ହୋଇ ଏକ ସମୟରେ ମୋର ଶତ୍ରୁରୂପୀ ପୁତ୍ର ଦୁରାଚାର, ଏହି କୁଳାଙ୍ଗାରକୁ ନିର୍ଦ୍ଦୟ ଭାବେ ଚକଟି ମାରିଦିଅ । ଏହି କୁଳାଙ୍ଗାରକୁ ମାରିପାରିଲେ ମୁଁ ତୁମ୍ଭମାନଙ୍କୁ ଚିରକାଳ ସକାଶେ ମୁକ୍ତ କରିବି ଏବଂ ତୁମ୍ଭେମାନେ ସ୍ୱ ସ୍ୱ ସ୍ଥାନରେ ସ୍ୱଚ୍ଛନ୍ଦରେ ରହିବ ।' ଦିଗ୍‌ଗଜମାନେ ହିରଣ୍ୟକଶିପୁର ଆଜ୍ଞା ଶୁଣି ପର୍ବତକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେବା ଶକ୍ତି ବିଶିଷ୍ଟ ନିଜ ନିଜ ଦନ୍ତମାନଙ୍କରେ ପ୍ରହ୍ଲାଦଙ୍କୁ ଆଘାତ କଲେ । ସେପରି କରିବା ଦ୍ୱାରା ସେମାନଙ୍କର ଦନ୍ତମାନ ଖଣ୍ଡ ବିଖଣ୍ଡ ହୋଇ ଭୂତଳରେ ପଡ଼ିଲା ସିନା ପ୍ରହ୍ଲାଦଙ୍କର ତିଳେ ହେଲେ କ୍ଷତି ହେଲା ନାହିଁ । ଦନ୍ତମାନ ଶିଥିଳ ହେବାହେତୁ ଦିଗ୍‌ଗଜମାନେ ଘୋର ଚିତ୍କାର କରି ପୃଷ୍ଠଭଙ୍ଗ ଦେଇ ଫେରିଗଲେ । ପରେ ହିରଣ୍ୟକଶିପୁ କ୍ରୋଧରେ ଅନ୍ଧ ହୋଇ ସାପୁଆ ମାନଙ୍କୁ ଡକାଇ ବିଷପୂର୍ଣ୍ଣ ଧୂମୋଦ୍‌ଗାରୀ, ଜ୍ୱାଳାମୁଖ କ୍ରୂର ସର୍ପ ଅଣାଇ ଏକ ସମୟରେ ଦଂଶନ କରାଇ ମାରି ଦେବାକୁ ଆଜ୍ଞା ଦେଲେ । ଯେ କୌଣସି ସର୍ପ ଦଂଶନ କଲେ ସାଧାରଣତଃ ମନୁଷ୍ୟମାନେ ମରି ଯାଆନ୍ତି । ମାତ୍ର ଏହି କ୍ରୂର ସର୍ପମାନେ ଏକ ସମୟରେ ପ୍ରହ୍ଲାଦଙ୍କୁ ଦଂଶନ କରି ତାଙ୍କର ଶରୀରକୁ ବିଷପୂର୍ଣ୍ଣ କଲେ ମଧ୍ୟ ବିଷ୍ଣୁଭକ୍ତ ପ୍ରହ୍ଲାଦଙ୍କର ଟିକିଏ ହେଲେ ପୀଡ଼ା ହୋଇ ନ ଥିଲା । ଉତ୍ତପ୍ତ ଆରକ୍ତ ଲୌହପିଣ୍ଡର ସଂସ୍ପର୍ଶରେ କେଞ୍ଚୂଆମାନେ ଜଳିଗଲାପରି ସେ ସମସ୍ତ ସର୍ପ ବିଷ ଦାଢ଼ ନିର୍ଜୀବ ହୋଇ ତଳେ ପଡ଼ି ଗଲେ । ହିରଣ୍ୟକଶିପୁ କ୍ରୂର ସର୍ପ ଦଂଶନରେ ମଧ୍ୟ ପ୍ରହ୍ଲାଦଙ୍କର କୌଣସି କ୍ଷତି ନ ହେବା ଦେଖି ନିଜେ ସେ ସର୍ପମାନଙ୍କ ଦ୍ୱାରା ଦଷ୍ଟ ହେଲା ପରି ଅସହ୍ୟ ଯନ୍ତ୍ରଣା ଅନୁଭବ କଲେ । ତାପରେ ସେ ଅନେକ ଶଗଡ଼ରେ ଶୁଖିଲା କାଠ ଅଣାଇ ଏକାଠି ପ୍ରଜ୍ୱଳିତ କରି ରାକ୍ଷସମାନଙ୍କ ଦ୍ୱାରା ହାତ ପାଦ ବନ୍ଧାଇ ପ୍ରହ୍ଲାଦଙ୍କୁ ସେହି ଅଗ୍ନିରେ ନିକ୍ଷେପ କଲେ । ଅଗ୍ନି ପ୍ରଖର ହୋଇ ଉଠିଲା ଅଗ୍ନିର ତାପରେ ରାକ୍ଷସ ଭଟମାନେ ଭୀଷଣ ଜ୍ୱାଳା ଅନୁଭବ କଲେ । ମାତ୍ର ପ୍ରହ୍ଲାଦ ସେହି ଅଗ୍ନିମଧ୍ୟରେ ରକ୍ତ ପଦ୍ମ ମଧ୍ୟରେ ବିହାର କରୁଥିବା ଚକ୍ରବାକ ପକ୍ଷୀ ପରି ଶୋଭା ପାଉଥିଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟ ବର୍ଣ୍ଣନଂ ନାମ ପଞ୍ଚଦଶୋଽଧ୍ୟାୟଃ ।୧୫।

# ଷୋଡ଼ଶ ଅଧ୍ୟାୟ

ଜୈମିନି କହିଲେ—ହିରଣ୍ୟକଶିପୁ ତାଙ୍କର ସମସ୍ତ କାର୍ଯ୍ୟ ବିଫଳ ହେବା ଦେଖି ଶାନ୍ତ ହେବା ଦୂରେ ଥାଉ, ଅଧିକ କ୍ରୁଦ୍ଧ ହୋଇ ଉଠିଲେ । ବିଶେଷ ଦୁଃଖିତ ହୋଇ ମନ୍ତ୍ରଙ୍କ ମନ୍ତ୍ରୀ ବିପ୍ରଚିତ୍ତି ପ୍ରଭୃତିଙ୍କୁ ଡକାଇ କହିଲେ— ଦୈତ୍ୟଶ୍ରେଷ୍ଠ ଗଣ, ମୋର ବକ୍ତବ୍ୟ ଶୁଣନ୍ତୁ । ଆପଣମାନେ ମୋର ଆଜ୍ଞା ପାଳନ କରିବାରେ ସବୁବେଳେ ପ୍ରସ୍ତୁତ । ମୋ ଦ୍ୱାରା ଇନ୍ଦ୍ର, ଯମ ପରାଜିତ ହୋଇ ଅଛନ୍ତି । ବରୁଣ କୁବେର କଅଣ ହେଲେ ଜଣା ଯାଉନାହିଁ । ଉତ୍ତାପପୂର୍ଣ ହେଲେ ମଧ୍ୟ ସୂର୍ଯ୍ୟ ମୋ ନଗରରେ ସ୍ପଷ୍ଟ ରୂପ ଧାରଣ କରି ପ୍ରକାଶ ପାଏ ନାହିଁ । ପବନ ମୋର ଦ୍ୱାରଦେଶ ମାର୍ଜନ କରି ଜଳ ସିଞ୍ଚୁଅଛି । ଅଗ୍ନି ପାକ କରୁଅଛି । ଦୈତ୍ୟ ଦାନବ, ଗନ୍ଧର୍ବ, ଯକ୍ଷ, କିନ୍ନର, ବିଦ୍ୟାଧର ଓ ଅପ୍ସରା ପ୍ରଭୃତି ମୋର ଆଜ୍ଞାବର୍ତ୍ତୀ । ବ୍ରହ୍ମାଙ୍କ ସୃଷ୍ଟ କୌଣସି ପ୍ରାଣୀ ମୋତେ ମାରି ପାରିବ ନାହିଁ । ମୁଁ ରାଜ୍ୟପାଳନ କରି ୨୧ଟି ଯୁଗ ଗଲାଣି । ଦୁଃଖ, ଶୋକ, ସନ୍ତାପ କଅଣ ନ ଜାଣି, ଭୋଗାସକ୍ତ ହୋଇ ନାନା ପ୍ରକାର ବିଳାସ ଅନୁଭବ କରି ଅତୀତ ଓ ଆଗାମୀ କାଳକୁ ଖାତିରେ କରୁନାହିଁ । ମୋର ଶତ୍ରୁରୂପେ ଏହି ପୁତ୍ର ଜାତ ହୋଇଅଛି । ଏହେତୁ ମୋର ହୃଦୟରେ ଅସହ୍ୟ କ୍ଷୋଭ ଜାତ ହୋଇଅଛି । ଏ ଶସ୍ତ୍ର, ଅଗ୍ନି ଓ ବିଷାଦିରେ ମଧ୍ୟ ମରୁନାହିଁ । ନିଜ ମତରେ ସ୍ଥିର ରହି ସେହି ଦୁର୍ବୁଦ୍ଧି ଛୁଡୁନାହିଁ, ଆପଣମାନେ ଓ ଗୁରୁପୁତ୍ର ଚଣ୍ଡମାର୍କ କେତେ ବୁଝାଇଥିଲେ ମଧ୍ୟ ନିଜ ମତ ଛାଡୁନାହିଁ । ବର୍ତ୍ତମାନ ଏହାକୁ କଅଣ କରିବାକୁ ହେବ ଆପଣମାନେ କହନ୍ତୁ ।' ହିରଣ୍ୟକଶିପୁଙ୍କର ବାକ୍ୟ ଶୁଣି ମନ୍ତ୍ରୀମାନେ କହିଲେ—ଦୈତ୍ୟରାଜ, ଏହି ବାଳକ କାହିଁକି ଅସ୍ତ୍ର, ଶସ୍ତ୍ର, ଅଗ୍ନି ବିଷ, ଦିଗ୍‌ଗଜାଦିଦ୍ୱାରା ମରୁନାହିଁ—ତାହା ଆପଣ କ୍ରୋଧରେ ବୁଝିପାରୁ ନାହାନ୍ତି । ସଂସାରରେ ପ୍ରତ୍ୟେକ ପଦାର୍ଥ ସ୍ୱକାରଣର ଧର୍ମ ଗ୍ରହଣ କରିଥାଏ । ବ୍ରହ୍ମାଙ୍କର ବର ପ୍ରଭାବରେ ଆପଣଙ୍କୁ କେହି ହେଲେ ମାରିପାରିବେ ନାହିଁ । ଏହି ବାଳକ ଅବିନାଶୀ ଆପଣଙ୍କର ଔରସରୁ ଜାତ । ଅତଏବ ଏହି ବାଳକକୁ ମଧ୍ୟ ଯେ କୌଣସି ଭୂତାଦି ମାରି ପାରିବେ ନାହିଁ । ସମସ୍ତ କାରଣ ଧର୍ମ କାର୍ଯ୍ୟରେ ସଙ୍କ୍ରମି ଥାଏ । ସର୍ବାହ୍ଲାଦକର, ଶ୍ରୀମାନ୍ ସିଂହସମବଳ, ମୃଦୁଭାଷୀର ଏହି ବାଳକକୁ ଦଣ୍ଡଦ୍ୱାରା ଶିକ୍ଷା ଦେବା ସମୁଚିତ ନୁହେଁ । ଶିକ୍ଷକ ମାନଙ୍କଦ୍ୱାରା ସାମ ଉପାୟରେ ଏହାକୁ ବୋଧ କରାଇଲେ ସୁଫଳ ହେବ । କ୍ରମେ କ୍ରମେ

ଯୌବନ ଲାଭ କରି ନିଜେ ନିଜେ ଏହି ଦୁର୍ବୁଦ୍ଧି ଛାଡ଼ିଦେବେ । ରାଜପୁତ୍ରଙ୍କୁ ଏପରି ଦଣ୍ଡ ଦେବା ଆମ୍ଭେମାନେ କେବେହେଲେ ଶୁଣିନାହୁଁ । ଆପଣଙ୍କ ଆଦେଶରେ ଗୁରୁମାନେ ପୁଣି ନୀତି ଉପଦେଶ ଦିଅନ୍ତୁ ।" ଏପରି ବୃଦ୍ଧ, ମନ୍ତ୍ରୀ, ଗୁରୁମାନଙ୍କର ପ୍ରବୋଧରେ ହିରଣ୍ୟକଶିପୁ ଟିକଏ ଶାନ୍ତଭାବ ଧରି ରହିଲେ । ଅସୁର ପୁରୋହିତ ରାଜାଙ୍କ ଆଦେଶରେ ପ୍ରହ୍ଲାଦଙ୍କୁ ନିଜ ଘରକୁ ନେଇ ନୀତିଶାସ୍ତ୍ର ପଢ଼ାଇବାକୁ ଲାଗିଲେ । ଶବ୍ଦଶାସ୍ତ୍ର ନ୍ୟାୟଶାସ୍ତ୍ର ପ୍ରଭୃତି ଏବଂ ଶୁକ୍ରାଚାର୍ଯ୍ୟରଚିତ ଦୋଷ-ରହିତ ସାମାଦି-ଉପାୟସଂବଳିତ ଆନ୍ୱୀକ୍ଷିକୀ ରାଜନୀତି ପ୍ରଭୃତି ମଧ୍ୟ ଶିକ୍ଷା ଦେଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନଂ ନାମ ଷୋଡଶୋଽଧ୍ୟାୟଃ ।



## ସପ୍ତଦଶ ଅଧ୍ୟାୟ

ଜୈମିନି କହିଲେ—ଏପରି କେତେକାଳ ଗଲାପରେ ଅସୁର ପୁରୋହିତ ଚଣ୍ଡମାର୍କ ପାଠ ଶେଷରେ ଏକାନ୍ତରେ ପ୍ରହ୍ଲାଦଙ୍କୁ ବସାଇ କହିଲେ—'ବତ୍ସ ପ୍ରହ୍ଲାଦ ! ରାଜକାର୍ଯ୍ୟୋପଯୋଗୀ ସକଳ ନୀତିଶାସ୍ତ୍ର ଆପଣ ପୂର୍ଣ୍ଣଭାବେ ପଢ଼ିଲେ । ଆପଣଙ୍କ ପରି ଶିଷ୍ୟଦ୍ୱାରା ଆମ୍ଭର ବିଶେଷ ଉପକାର ହେବ । ପୁତ୍ର ମୁଖ୍ୟଭାବେ ପିତାଙ୍କ ଆଚାର ବ୍ୟବହାର ଅବଲମ୍ବନ କରିବ । ନିଜ କୁଳ ଗୃହ ତ୍ୟାଗକଲେ କୌଣସି ପୁରୁଷ ସୁଖ ଲାଭ କରେ ନାହିଁ । ତୁମ୍ଭେ ସବୁବେଳେ ଯାହାଙ୍କୁ ଧ୍ୟାନ କରୁଅଛ ସେ ଦୈତ୍ୟମାନଙ୍କର ମଙ୍ଗଳ ସହି ପାରନ୍ତି ନାହିଁ । ଦୈତ୍ୟନନ୍ଦନ ! ଦେବଗଣ ପକ୍ଷପାତୀ ବିଷ୍ଣୁ ଦୈତ୍ୟମାନଙ୍କର ଶତ୍ରୁ । ତୁମ୍ଭେ ଦୈତ୍ୟକୁଳରେ ଜନ୍ମଲାଭ କରି ଦେବତାମାନଙ୍କ ପକ୍ଷ ଅବଲମ୍ବନ କରିବା ସମୀଚୀନ ନୁହେଁ । ବୁଦ୍ଧିମାନ୍ ପ୍ରହ୍ଲାଦ ଗୁରୁଙ୍କର ଉପଦେଶ ବିନୟ ସହକାରେ ଶୁଣି ହାତରେ କାନ ରୁନ୍ଧ କରି ପରିହାସ କରି କହିଲେ—ଆପଣ ବ୍ରାହ୍ମଣ, ସମଗ୍ର ସାଙ୍ଗବେଦ ଅଧ୍ୟୟନ କରିଅଛନ୍ତି । ଆପଣ ବିଷ୍ଣୁଙ୍କୁ ସେବା କର ନାହିଁ ବୋଲି କିପରି କହୁ ଅଛନ୍ତି ? ବ୍ରହ୍ମଜ୍ଞାନୀ ଓ ଗୁରୁ ଆପଣ ବାରଣ କଲେ ମଧ୍ୟ, ପିତା ଶତ ଶତ ବାଧା ଦେଲେ ମଧ୍ୟ ମୁଁ କିପରି ବିଷ୍ଣୁଙ୍କର ଧ୍ୟାନ ଛାଡ଼ି ରହି

ପାରିବ ? ମୁଁ ହୃଦପୁରେ ବିଷ୍ଣୁଙ୍କର ଧ୍ୟାନ କରିବା ହେତୁ କେବଳ ଦୈତ୍ୟାରି ଭଗବାନ ବିଷ୍ଣୁ ମୋତେ ସମସ୍ତ ଆପଦରୁ କପରି ବିମୁକ୍ତ କରି ଅଛନ୍ତି—ଆପଣ ପ୍ରତ୍ୟକ୍ଷରେ ଦେଖି ଅଛନ୍ତି । ଭଗବାନ୍ ବିଷ୍ଣୁ ଦେବ ଦାନବ ସମସ୍ତଙ୍କର ସମଦର୍ଶୀ ଦେବତା । ଯିଏ ତାଙ୍କୁ ଯେ ରୂପରେ ଦେଖେ, ତାଙ୍କୁ ସେ ସେହି ରୂପରେ ଦେଖନ୍ତି । ଦେବଦାନବ ବୋଲି ସୃଷ୍ଟିରେ ଦୁଇପ୍ରକାର ବ୍ୟକ୍ତି ଅଛନ୍ତି । ବିଷ୍ଣୁଭକ୍ତଙ୍କୁ ଦେବ ଓ ବିଷ୍ଣୁଭକ୍ତିରହିତଙ୍କୁ ଦାନବ କହନ୍ତି । ଏହା ସତ୍ୟ । ଦ୍ୱିଜ ଶମଦମାଦିସମ୍ପନ୍ନ ହେଲେ ମଧ୍ୟ ବେଦବେଦାଙ୍ଗରେ ପ୍ରବୀଣ ହୋଇ ଯାଗ କରୁଥିଲେ ମଧ୍ୟ ବିଷ୍ଣୁଭକ୍ତିରହିତ ହେଲେ ଚଣ୍ଡାଳଠାରୁ ମଧ୍ୟ ଅଧମ ବୋଲାଇ ଥାଏ । ପତିତ ହେଲେ ମଧ୍ୟ ଯେଉଁ ବିଷ୍ଣୁଙ୍କର ସ୍ମରଣରେ ମୁକ୍ତିପାଏ ସେହି ଅତିଶୟ ମଙ୍ଗଳ ସ୍ୱଭାବ ବିଷ୍ଣୁଦେବଙ୍କୁ ମୋର କୋଟି କୋଟି ନମସ୍କାର ।” ପରମାର୍ଥତତ୍ତ୍ୱଜ୍ଞ ପ୍ରହ୍ଲାଦ ଦୈତ୍ୟକୁଳର ଅଭିବୃଦ୍ଧିକାମୀ ଏହି ଉପଦେଶ ଦେଇ ତୁନି ହେଲେ । ସହସ୍ର ଅଧ୍ୟାପକ ପ୍ରହ୍ଲାଦଙ୍କର ଉପଦେଶ ଶୁଣି କ୍ରୁଦ୍ଧହେଲେ ମଧ୍ୟ ଶାନ୍ତଭାବ ଧାରଣ କରି ଧୀରେ ଧୀରେ କହିଲେ—‘ପ୍ରହ୍ଲାଦ ! ତୁମ୍ଭର ଏବଂ ଆମ୍ଭର ଯାହା ମଙ୍ଗଳକର, ତାହାଶୁଣ । ତୁମ୍ଭର ପିତା ନିତାନ୍ତ ମୂର୍ଖ ହେଲେମଧ୍ୟ ତାଙ୍କରକଥା ରକ୍ଷା କରିବା ତୁମପକ୍ଷେ ସମୁଚିତ । ବିଷ୍ଣୁନାମ ସ୍ମରଣ ତୁମ୍ଭର ସ୍ୱଭାବ ଓ ବନ୍ଧମୋକ୍ଷର କାରଣ । ଅତଏବ ତାଙ୍କୁ ମନେ ମନେ ସ୍ମରଣ କର । ମନରେ ସ୍ମରଣ କଲେ ମଧ୍ୟ ବିଷ୍ଣୁ ତୁମ୍ଭର ସମସ୍ତ କାମନା ପୂର୍ଣ୍ଣ କରିବେ । ସର୍ବଜ୍ଞ ମହର୍ଷିମାନେ ସର୍ବଦା ବିଷ୍ଣୁଙ୍କୁ ମନରେ ଧ୍ୟାନ କରିଥାଆନ୍ତି । ମନୋଯୋଗ ବ୍ୟତୀତ କାୟିକ ବାଚିକ ସୁକୃତ ଦୁଷ୍କୃତ କର୍ମମାନ କଦାପି ଫଳଦାୟକ ହୁଅନ୍ତି ନାହିଁ । କର୍ମସିଦ୍ଧି ସକାଶେ କାୟିକ ଓ ବାଚିକ କର୍ମ ପ୍ରୋକ୍ତହେଲେ ମଧ୍ୟ ‘ଜ୍ଞାନାନ୍ମୋକ୍ଷଃ’ ଏହି ଶ୍ରୁତିଅନୁଯାୟୀ ମାନସିକ କର୍ମହିଁ ପ୍ରଶସ୍ତ । ଅତଏବ ତୁମେ ବିଷ୍ଣୁ ସ୍ମରଣ ବାକ୍ୟରେ କରନାହିଁ । ତୁମ୍ଭ ପିତାଙ୍କ ସମୀପରେ ଆମ୍ଭେମାନେ ଉପଦେଶ ଦେଇପରି କହୁଥାଉ । ପ୍ରହ୍ଲାଦ ! ଆମ୍ଭେମାନେ ବାରମ୍ବାର ପ୍ରାର୍ଥନା କରୁଅଛୁଁ । ଅଧିକ ଶିକ୍ଷାପ୍ରଦ ଆମ୍ଭର ଏହି ଉପଦେଶ ଗୁଡ଼ିକ ତୁମ୍ଭେ ପ୍ରଧାନ କରି ଆଚରଣ କର ।” ଦୈତ୍ୟଗୁରୁମାନଙ୍କର ପ୍ରାର୍ଥନା ଶୁଣି ପ୍ରହ୍ଲାଦ ମନେ ମନେ ଗମ୍ଭୀର ଆଲୋଚନା କରି ଦୁଃଖିତ ହୋଇ ସେମାନଙ୍କୁ କହିଲେ—ଆପଣମାନେ ସର୍ବତୋଭାବେ ଅତି ଅଯୁକ୍ତ କଥା କହୁଅଛନ୍ତି । ଆପଣମାନେ ମୋର ଗୁରୁ । ଆପଣ ମାନଙ୍କ ସମ୍ମୁଖରେ ଗୋଟାଏ ବାଳକ କଅଣ ବା କହିବ ? ଜନ୍ମାବଧି ବିଷ୍ଣୁଙ୍କର ପୂଜନ, ଭଜନ ଓ ବିଷ୍ଣୁଙ୍କ ଭକ୍ତିରେ ଉନ୍ମତ୍ତହୋଇ ନର୍ତ୍ତନ କରୁଥିବାଭକ୍ତମାନେ

କ୍ଷଣକାଳ ସୁଦ୍ଧା ଵିଘ୍ନପ୍ରାପ୍ତ ହେଲେ ଖଡ୍‌ଗରେ ଆହତ ହେଲପରି ମ୍ରିୟମାଣ ହୋଇଥାନ୍ତି । ସତ୍ନାଗ'—ଉପଦେଶ ଶ୍ରବଣ ଆପଣମାନେ ବିଷ୍ଣୁଙ୍କୁ ସ୍ମରଣ କର ନାହିଁ ବୋଲି କପରି ପ୍ରାର୍ଥନା କରୁଅଛନ୍ତି । ଇନ୍ଦ୍ରିୟମାନଙ୍କର ଅଧିପତି ଓ ପ୍ରବର୍ତ୍ତକ ଭଗବାନ୍ ବିଷ୍ଣୁ ହୃଦୟରେ ଅବସ୍ଥାନ କରନ୍ତି, ମନରେ ଧ୍ୟାନ କଲେ କପରି ବାକ୍ୟରେ ପ୍ରକାଶ ନ କରି ରହିହେବ ? ମନୁଷ୍ୟ ମନରେ ଯାହା ଧ୍ୟାନ କରେ, ତାହା ବାକ୍ୟରେ ପ୍ରକାଶ କରେ । କାୟରେ ତାର ସମ୍ବନ୍ଧୀ ସମସ୍ତ କାର୍ଯ୍ୟ କରେ । କଦାପି ଏହାର ଵିପର୍ଯ୍ୟୟ ଘଟିପାରେ ନାହିଁ । ମନୁଷ୍ୟ ଅଗତିକ ହେଲେ ମଧ୍ୟ ପବିତ୍ର ବିଷ୍ଣୁ ନାମ ଶ୍ରବଣ ଓ ମନନ କରି ବନ୍ଧନରୁ ମୁକ୍ତ ହେବା ମୁଁ ଦେଖି ଦେଖି କପରି ସେହି ନାମର ସ୍ମରଣ ପଠନାଦି ନ କରି ରହି ପାରିବି ? ତପସ୍ୟା, ଯାଗ, ସନ୍ଧ୍ୟାବନ୍ଦନ କ୍ରିୟାକଳାପରେ ଯଦି କୌଣସି ତ୍ରୁଟି ଘଟେ, ତେବେ ସେହି ତ୍ରୁଟି ବିଷ୍ଣୁଙ୍କର ନାମସ୍ମରଣରେ ଅପସୃତ ହୁଏ । ସେହିପରି ବିଷ୍ଣୁଙ୍କର ନାମ ସ୍ମରଣ ମୁଁ କପରି ଛାଡ଼ିପାରିବି ? 'ସବୁବେଳେ ବିଷ୍ଣୁଙ୍କର ସ୍ମରଣ କର, କ୍ଷଣେହେଲେ ଛାଡ ନାହିଁ' ବୋଲି ଵେଦବେତ୍ତାମାନେ କହନ୍ତି । ସେହି ନାମ ସ୍ମରଣ ମୁଁ କପରି ଛାଡ଼ିପାରିବି ? ଯାହାଙ୍କର ନାମସ୍ମରଣ ସବୁବେଳେ କଲେ ମନୁଷ୍ୟ ପୁଣ୍ୟବାନ୍ ହୋଇ ସମସ୍ତ ମଙ୍ଗଳ ଲାଭକରେ, ସେହି ବିଷ୍ଣୁଙ୍କର ନାମ ସ୍ମରଣ ମୁଁ କପରି ଛାଡିପାରିବି ? ଯେଉଁ ବିଷ୍ଣୁଙ୍କ ଚରିତ ପ୍ରତିପାଦକ କାବ୍ୟଛନ୍ଦ, ବୃତ୍ତି, ଅଳଙ୍କାରାଦିଦୋଷ ଯୁକ୍ତ ହେଲେ ମଧ୍ୟ ପଣ୍ଡିତମାନେ ଦୋଷ ନ ଧରି ଆଗ୍ରହସହକାରେ ପଢ଼ି ମାଧୁର୍ଯ୍ୟ ଆସ୍ୱାଦନ କରୁଅଛନ୍ତି, ସେହି ବିଷ୍ଣୁଙ୍କର ନାମ-ସ୍ମରଣ ମୁଁ କପରି ଛାଡ଼ିପାରିବି ? ଯେଉଁ ବିଷ୍ଣୁଙ୍କର ନାମ ଶ୍ରଦ୍ଧା ବା ଅଶ୍ରଦ୍ଧାରେ ଥରେମାତ୍ର ସ୍ମରଣ କଲେ ମନୁଷ୍ୟ ସର୍ବପାପ ବିମୁକ୍ତହୁଏ, ସେହି ବିଷ୍ଣୁସ୍ମରଣ ଛାଡିବା କପରି ସାଧ୍ୟ ହେବ ? ସମସ୍ତ ବର୍ଣ୍ଣାଶ୍ରମ ଦେଶକାଳ ବ୍ୟବସ୍ଥାମାନ ନାମ-ସ୍ମରଣୋଦ୍ଦେଶରେ ବିହିତ ନ ହୋଇ ସଦା ସ୍ମରଣୋଦ୍ଦେଶ୍ୟରେ ବିହିତ ହୋଇ ଅଛି । ଅତଏବ ମୁଁ କପରି ନାମ ସ୍ମରଣ ଛାଡ଼ିପାରିବି । ସଂସାରଭୟନାଶକ ସର୍ବାନ୍ତର୍ଯ୍ୟାମୀ ଶୁଦ୍ଧ ଭଗବାନଙ୍କର ନାମ ସ୍ୱପ୍ନରେ ମଧ୍ୟ ସ୍ମରଣ କଲେ ଉପପ୍ଲବ ବିନାଶ ଦୂର ହୁଏ । ସଂସାର ଭୟତ୍ରସ୍ତ ମୁଁ କପରି ସେହି ସ୍ମରଣ ଛାଡି ପାରିବି ? ଯାହାଙ୍କର ଦିବ୍ୟମଙ୍ଗଳମୟ ବିଗ୍ରହ ନେତ୍ରରେ ଦେଖିଲା ମାତ୍ରେ ନିର୍ମଳ ମନରେ ସମସ୍ତ କାର୍ଯ୍ୟ ଚକ୍ଷୁଭବେ ପ୍ରତିଭାତ ହୁଏ ସେହି ବିଷ୍ଣୁଙ୍କୁ ଅନ୍ୟ ମାନଙ୍କର ଭୟରେ କପରି ବାକ୍ୟରେ ପ୍ରକାଶ ନ କରି ରହି ପାରିବି ? ଯେ ସବୁବେଳେ ତଦ୍‌ଗତମନସ୍କ ଆର୍ତ୍ତ ଭକ୍ତମାନଙ୍କର ବାଧା ଦୂର କରନ୍ତି,

ସ୍ମରଣ ମାନେ ଦର୍ଶନ ଦେଇ ରକ୍ଷାକରନ୍ତି, ସେହି ବିଷ୍ଣୁଙ୍କର ନାମ କିପରି ଛାଡ଼ିପାରିବି ? ମରଣ ସମୟରେ ବାଙ୍ମାତ୍ରରେ ଯେଉଁ ବିଷ୍ଣୁଙ୍କର ନାମ ସ୍ମରଣ କଲେ ଯମଦୂତମାନେ ଭୟରେ ତାହାକୁଛାଡ଼ି ପଳାଉଛନ୍ତି, ସେହି ବିଷ୍ଣୁଙ୍କର ନାମ ସ୍ମରଣ ମୁଁ କିପରି ଛାଡ଼ିପାରିବି ? ଯେ ଦୁଃଖରେ ସ୍ମରଣ କଲାମାତ୍ରେ ମୋତେ ସବୁବେଳେ ସମସ୍ତ ଆପଦରୁ ଉଦ୍ଧାର କରି ରକ୍ଷା କରୁ ଅଛନ୍ତି । ସେହି ବିଷ୍ଣୁଙ୍କୁ ବାକ୍ୟରେ ପ୍ରାର୍ଥନା ନ କରି ଅଧକ୍ଷଣ ସୁଦ୍ଧା ମୁଁ ରହି ପାରିବି ନାହିଁ ।'

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନଂ ନାମ ସପ୍ତଦଶୋଽଧ୍ୟାୟଃ । ୧୭ ।

—o—

## ଅଷ୍ଟାଦଶ ଅଧ୍ୟାୟ

ଗୁରୁମାନେ ପ୍ରହ୍ଲାଦଙ୍କର ପ୍ରତିକୂଳ ବଚନ ଶୁଣି କ୍ରୁଦ୍ଧ ହୋଇ ତାଙ୍କୁ ଧରି ହିରଣ୍ୟକଶିପୁଙ୍କ ସମୀପରେ ଉପସ୍ଥିତ ହେଲେ ଓ ସଭା ମଧ୍ୟସ୍ଥିତ ରାଜାଙ୍କୁ ଆଶୀର୍ବାଦ କରି ହାତଯୋଡ଼ି ଜଣାଇଲେ—'ଦୈତ୍ୟରାଜ, ଆପଣଙ୍କର ଆଦେଶରେ ଆମ୍ଭେମାନେ ଆପଣଙ୍କର ସୁପୁତ୍ରଙ୍କୁ ସବୁପ୍ରକାର ବିଦ୍ୟା ଶିକ୍ଷାଦେଲୁ । ଶୁକ୍ରଙ୍କ ପ୍ରଣୀତ ରାଜନୀତିଶାସ୍ତ୍ର ସମଗ୍ର ଖୁବ୍ ସାବଧାନତା ସହିତ ଉପଦେଶ ଦେଲୁଁ । ଆମ୍ଭେମାନେ ଯେତେ ଚେଷ୍ଟା କଲେ ମଧ୍ୟ ସେ ନିଜ ସ୍ୱଭାବ ଛାଡ଼ୁ-ନାହାନ୍ତି । ସବୁବେଳେ ବିଷ୍ଣୁଙ୍କୁ ସ୍ମରଣ କରିବା ତାଙ୍କର ସ୍ୱଭାବ । ବର୍ତ୍ତମାନ କଅଣ କରିବାକୁ ହେବ – ଆପଣ ବିଚାର କରନ୍ତୁ । ଏ ସାମ, ଦାନ, ଭେଦ ରୂପ ତିନି ଉପାୟରେ ଆୟତ୍ତ ହେବାର ନୁହନ୍ତି । ଦଣ୍ଡକୁ ଭୟ କରନ୍ତି ନାହିଁ' ହିରଣ୍ୟକଶିପୁ ଦୈତ୍ୟଗୁରୁଙ୍କର ନିବେଦନ ଶୁଣି କ୍ରୋଧରେ କାଳାଗ୍ନିସମ ପରି ଜଳି ଉଠି ଯମଦୂତ ପରି ଭୟଙ୍କର ଦୈତ୍ୟବୀରମାନଙ୍କୁ ଡାକି ପ୍ରହ୍ଲାଦଙ୍କୁ ମାରିବାକୁ ଆଜ୍ଞା ଦେଲେ । ଦୈତ୍ୟଗଣ ! ମୋର ଆଜ୍ଞାରେ ଏହି କୁଳ ପାଂଶୁଳକୁ ଗଳାରେ ପଥର ବାନ୍ଧି ଶୀଘ୍ର ସମୁଦ୍ର ମଧ୍ୟରେ ନିକ୍ଷିପ୍ତ କର । ତା ଉପରେ ଚଳ-ପ୍ରଚଳ ନ ହେଲା ପରି ବଡ଼ବଡ଼ ପର୍ବତ ଲଦିଦିଅ । ଏପରିକଲେ ଆଉ ବଞ୍ଚିରହିବ ନାହିଁ କି ବଞ୍ଚି ରହିଲେ ମଧ୍ୟ ଆଉ ଆମ ପାଖକୁ ଆସିପାରିବ ନାହିଁ । ହିରଣ୍ୟ-କଶିପୁଙ୍କର ଆଜ୍ଞା ଶୁଣି ଅନେକ ଦୈତ୍ୟ ଏକାଠି ଆସି ପାଞ୍ଚବର୍ଷ ବୟସର ପ୍ରହ୍ଲାଦଙ୍କ ଗଳାରେ ଶିକୁଳି ବାନ୍ଧି, ଭୟଙ୍କର ଶବ୍ଦ କରି କରି, ତମ୍ବି, ତମିଙ୍ଗଳ,

ମକରାଦି ଭୀଷଣ ଜନ୍ତୁ ପୂର୍ଣ୍ଣ ଅଗାଧ ସମୁଦ୍ରରେ ନିକ୍ଷିପ୍ତ କଲେ । ରାଜାଙ୍କର ଆଜ୍ଞା-ପ୍ରକାରେ ବିଶାଳ ଶିଳା ପୂର୍ଣ୍ଣ ପାଣ୍ଡୁପାଟଳ ବିଶାଳ ଗୋଟିଏ ପର୍ବତ ଲଦିଦେଲେ । ହୃଦୟରେ ଜଗଦାଶ୍ରୟ ଭଗବାନ୍ ନାରାୟଣଙ୍କୁ ଧ୍ୟାନ କରୁଥିବା ପ୍ରହ୍ଲାଦଙ୍କୁ ନିକ୍ଷେପ କଲା ମାତ୍ରେ ସମୁଦ୍ର ହୁଳସ୍ଥୂଳ ହୋଇଗଲା । ଅସୁର ରକ୍ଷକମାନେ ପ୍ରହ୍ଲାଦଙ୍କୁ ନିକ୍ଷେପ କରି ଫେରି ଆସିଲେ । ସମୁଦ୍ର ଜଳରେ ପକାଇ, ଉପରେ ପଥର ଲଦିଦେଲେ ମଧ୍ୟ ପ୍ରହ୍ଲାଦ ସମାଧିସ୍ଥ ଥିଲେ, ନିଜକୁ ମଧ୍ୟ ଜାଣିପାରୁ-ନ ଥିଲେ । ପର୍ବତ ପ୍ରହ୍ଲାଦଙ୍କ ଉପରେ ବାତସଞ୍ଚାଳିତ ଜାହାଜ ପରି ଭାସି ଉଠିଲା, ଜଳ ପ୍ରହ୍ଲାଦଙ୍କୁ ନ ବୁଡ଼ାଇ ଦୂରକୁ ଅପସରି ଯାଇଥିଲା । ପ୍ରହ୍ଲାଦଙ୍କର ସମସ୍ତ ବନ୍ଧନ ଆପେ ଆପେ ଫିଟିଗଲା । ସେ ସୌଧ ମଧ୍ୟରେ ଥିଲାପରି ଦୁଇ ଭାଗରେ ବଡ଼ଭକ୍ତ, ସମୁଦ୍ର ମଧ୍ୟରେ ଅବସ୍ଥାନ କରିଥିଲେ । ପ୍ରହ୍ଲାଦ ଯୋଗାସନା-ରୂଢ଼ ହୋଇ ନିଜ ହୃଦୟରେ ଦୈତ୍ୟକୁଳାନ୍ତକ ବିଷ୍ଣୁଙ୍କୁ ଧ୍ୟାନ କରି ସ୍ତୁତି କରିବାକୁ ଲାଗିଲେ—

'ମୋକ୍ଷ ଆଶେ ବୁଧଗଣ      ଯା ପାଦ ପଦ୍ମର
ମକରନ୍ଦ ରସ ପାନ—      ମଦେ ହୋଇ ଭୋଳ,
ସଂସାରର ପାପତାପ      ଦୂରେ ପରିହରି
ଧନଧାନ୍ୟ ଐଶ୍ୱର୍ଯ୍ୟ      ତୃଣ ମନେ କରି ।।
ସେବା କରୁଛନ୍ତି ଭକ୍ତ      ପରମ ଆନନ୍ଦେ
ମନ ମୋର ଭଜ ସଦା      ସେହି ପଦ୍ମପାଦେ ।।
ଯା ନାମ ସ୍ମରଣ କରି      ବାରେ ଭକ୍ତିଭରେ
କିରାତ କୈବର୍ତ୍ତ କଙ୍କ      ପୁଳିନ୍ଦ ଶବରେ ।
ହୂଣାଦି ଅଧମ ଜାତି      ପୁକ୍କଶ ଚଣ୍ଡାଳ
ପାପ ତାପ ବନ୍ଧୁ ମୁକ୍ତ      ଲଭନ୍ତି ସତ୍ୱର ।
ମନ ମୋର ହେଉ ଲୀନ      ଆଶ୍ରିତ ବତ୍ସଳ
ସେହି ବିଷ୍ଣୁଙ୍କର ପାଦ—      ପଦ୍ମେ ନିରନ୍ତର ।
କଳି ନ ପାରନ୍ତି ଯାର      ଯୋଗମାୟା ବଳ
ଧୃତବ୍ରତ ଯୋଗୀ ବ୍ରହ୍ମା      ମହର୍ଷି ସକଳ ।।
ସେହି ଆଦିଦେବ      ପରଂବ୍ରହ୍ମଙ୍କ ଚରଣ
ଭକ୍ତିଭରେ ସବୁବେଳେ      ଭଜ ମୋର ମନ ।।
ଯା ପାଦ କମଳୁ ଜନ୍ମି      ଦେବୀ ଭାଗୀରଥୀ
ତ୍ରିଭୁବନ ପାପନାଶା      ପୂତ ସ୍ରୋତସ୍ୱତୀ ।।

କରୁଅଛନ୍ତି ପବିତ୍ର ଏ ତିନି ଭୁବନ
ସେହି ତୀର୍ଥ ରୂପୀ ବ୍ରହ୍ମ ଭଜ ସଦା ମନ ।
ମୁନିମାନେ ଭକ୍ତିଭରେ କରି ଆରାଧନ,
ପାଦପଦ୍ମ ମୂଳେ ଆତ୍ମା କରନ୍ତି ଅର୍ପଣ,
ଯା ନାଭି କମଳୁଁ ଜନ୍ମି ଚତୁରାନନ
ସକଳ ବ୍ରହ୍ମାଣ୍ଡ କରୁ ଅଛନ୍ତି ସର୍ଜନ,
ସେହି ଆଦି ଦେବ ପ୍ରଭୁ ବିଷ୍ଣୁଙ୍କ ପଦରେ
ମନ ମୋର ରହୁ ସଦା ପୂରି ଭକ୍ତିଭରେ ।
ଅବସ୍ଥାନ କରି ସର୍ବ ପ୍ରାଣୀଙ୍କ ଅନ୍ତରେ
ଚଳାନ୍ତି ଇନ୍ଦ୍ରିୟମାନ ସ୍ୱ ସ୍ୱ ବିଷୟରେ,
ସେହି ସର୍ବ ଭୂତଆତ୍ମା ହୃଷୀକେଶ ପାଦେ
ମନ ମୋର ଜଡ଼ି ରହୁ ସଦା ଅପ୍ରମାଦେ ।
ଗର୍ଭେ ଭରି ନିଜ ଗଢ଼ା ସମସ୍ତ ଜଗତ
ଶୋଇଥାନ୍ତି ଶେଷେ ଯୋଗନିଦ୍ରା ଅଭିଭୂତ ।
ସେହି ସତ୍ ରଜ ତମ ଗୁଣର ଅତୀତ,
ନିର୍ବିକଳ୍ପ ନିରଞ୍ଜନ ଆଦ୍ୟନ୍ତ ବର୍ଜିତ,
ସନାତନ ପରଂବ୍ରହ୍ମ ଜନାର୍ଦ୍ଦନ ପଦେ
ମନ ମୋର ଜଡ଼ି ରହୁ ସଦା ଅପ୍ରମାଦେ ।
କରିବି ଶତ ସହସ୍ର ଯଜ୍ଞ ଅନୁଷ୍ଠାନ
ଯାର ପାଦପଦ୍ମ ଭକ୍ତିହୀନ ଦ୍ୱିଜଗଣ,
ଲଭିନ ପାରନ୍ତି ମୁକ୍ତି ଏ ଭବ ସାଗରୁ
ସେହି ବାସୁଦେବ ସଦା ମନ ମର ସ୍ମରୁ ।
କାମ କ୍ରୋଧ ଲୋଭ ମୋହ ଆଦିବାତୁରରେ
ପଡ଼ି ବୁଡ଼ି ରହି ଶ୍ରମ ସଂସାର ସାଗରେ
ଭବକ୍ଷିତ ଭକ୍ତ ଲୋକେ ଉଦ୍ଧରନ୍ତି ଯେହୁ,
ସେହି ଜଗବନ୍ଧୁ ପାଦେ ମନ ମୋର ରହୁ ।'

ପ୍ରହ୍ଲାଦଙ୍କର ଏହି ସ୍ତୁତିମାନ ଏକାନ୍ତରେ ଲକ୍ଷ୍ମୀଙ୍କ ସହ ବିହାର କରୁଥିବା ଭଗବାନ୍ ନାରାୟଣଙ୍କର ମନ ବିଚଳିତ କଲା । ସେ ତରତର ହୋଇ ଅର୍ଦ୍ଧବସ୍ତ୍ର ପୀତାମ୍ବର ଦକ୍ଷିଣ ହସ୍ତରେ ଗ୍ରହଣକରି ଅନ୍ତଃପୁରରୁ ନିର୍ଗତ ହେଲେ ।

ସଦା ପ୍ରସ୍ଥାଣସନ୍ନଦ୍ଧ ଗରୁଡ଼ ଉପରେ ଆରୋହଣ କରି ଦୟାର୍ଦ୍ର ହୃଦୟ ଭଗବାନ୍ ତୀବ୍ରବେଗରେ ଭୂଲୋକକୁ ଅବତରଣ କଲେ ଓ ଅତି ଶୀଘ୍ର ଗମନ ହେତୁ ଶାନ୍ତକ୍ଳାନ୍ତ ଗରୁଡ଼ ଉପରେ ଦକ୍ଷିଣ ହସ୍ତରେ ଅମୃତ ଛୁଞ୍ଚି ପ୍ରହ୍ଲାଦଙ୍କ ଉପରେ ଦୈତ୍ୟମାନେ ଲଦି ଦେଇଥିବା ପର୍ବତକୁ ଦୂରରୁ ଟାଣି ନେଲେ । ପର୍ବତ ଏକ ଜାହାଜ ପାଣିରେ ଭାସିଲା ପରି ପ୍ରହ୍ଲାଦଙ୍କ ଉପରେ ଭାସୁଥିଲା । କରୁଣାର୍ଦ୍ର ହୃଦୟ ହରି ପର୍ବତକୁ ଟାଣି ନେଇ ବିଷ୍ଣୁଗତମାନସ ପ୍ରହ୍ଲାଦଙ୍କ ହାତ ଧରି ଉପରକୁ ଉଠାଇଲେ । ସେ ସମୟରେ ପ୍ରହ୍ଲାଦ କୋଟିଚନ୍ଦ୍ର ସମାନ କାନ୍ତିମାନ୍ ଦେଖା ଯାଉଥିଲେ । ଭଗବାନ୍ ଜଗପତି ଗରୁଡ଼ଙ୍କ ଉପରେ ବସିଥିଲେ । ତାଙ୍କର ବସ୍ତ୍ରାଭରଣ ପ୍ରସ୍ଥାଣ ବେଗରେ ଅସ୍ତବ୍ୟସ୍ତ ଥିଲା । ପ୍ରହ୍ଲାଦ ଭଗବାନଙ୍କର ଦର୍ଶନ ଲାଭ କରି ବିସ୍ମୟ ଓ ହର୍ଷରେ ଅଭିଭୂତ ହୋଇ ପ୍ରଣତାର୍ତ୍ତିହର ବିଷ୍ଣୁଙ୍କ ଚରଣ କମଳ ବନ୍ଦନ କରି ସ୍ତୁତି କଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟ ବର୍ଣ୍ଣନଂ ନାମ ପଞ୍ଚଦଶୋଽଧ୍ୟାୟଃ ।୧୫।

---

## ଊନବିଂଶ ଅଧ୍ୟାୟ

ପ୍ରହ୍ଲାଦ କହିଲେ—ଆପଣ ସମସ୍ତ ଭୂତମାନଙ୍କର ଆତ୍ମାସ୍ୱରୂପ, କାଳ-ସ୍ୱରୂପ, କରୁଣାକର ଓ ସର୍ବାତ୍ମା, ଆପଣଙ୍କୁ ମୋର ନମସ୍କାର । ଏହି ଦୃଶ୍ୟମାନ ପ୍ରପଞ୍ଚ ଆପଣ ରଚନା କରିଅଛନ୍ତି । ଏହି ଜଗତ ଓ ଆପଣଙ୍କ ମଧ୍ୟରେ କୌଣସି ଭେଦ ନାହିଁ ବୋଲି ସର୍ବଜ୍ଞ ଆପଣଙ୍କ ପୂରୁଷାର୍ଥ କହନ୍ତି । ଏହି ଜଗତର ଉପାଦାନ, ନିମିତ୍ତ ଓ ସହକାରୀ କାରଣ ଆପଣ । ବିଶ୍ୱବ୍ୟାପୀ ଆପଣ ଜଗତର ଶ୍ରେଷ୍ଠ ଆଦିକାରଣ ସ୍ୱରୂପ । ଆପଣ ଚତୁର୍ମୁଖ ବ୍ରହ୍ମା ରୂପେ ଜଗତ ସର୍ଜନା କରନ୍ତି, ବିଶ୍ୱବ୍ୟାପୀ ବିଷ୍ଣୁରୂପେ ପାଳନ କରନ୍ତି ଏବଂ କାଳରୂପୀ ରୁଦ୍ରରୂପେ ସଂହାର କରନ୍ତି । ଅବ୍ୟୟରୂପୀ ଆପଣ ଜଗତର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର କାରଣ । କର୍ତ୍ତା, କାରୟିତା କାର୍ଯ୍ୟ—ଏହି ତିନୋଟିର ଆପଣ କେବଳ କାରଣ । ବ୍ୟାପ୍ୟ ବ୍ୟାପକ ଓ ବ୍ୟାପ୍ତି ସୃଷ୍ଟ, ସ୍ରଷ୍ଟା ଓ ସୃଷ୍ଟି ମଧ୍ୟ ଆପଣ କେବଳ । ଜ୍ଞାତା, ଜ୍ଞାନ ଓ ଜ୍ଞାତବ୍ୟ ଧ୍ୟାତା, ଧ୍ୟାନ ଓ ଧ୍ୟେୟ, କାର୍ଯ୍ୟ କାରଣରୂପ ସମସ୍ତ ଜଗତ ମଧ୍ୟ ଜଗନ୍ମୟ ଆପଣ କେବଳ । ଅଗ୍ନି ପ୍ରଭୃତି ତେଜଃପଦାର୍ଥ ମାନଂକର

ଦାହକତାଗୁଣ ସେମାନଙ୍କର ସ୍ୱତଃସିଦ୍ଧ ନୁହେଁ । ସେମାନେ ଆପଣଙ୍କର ଆଜ୍ଞାରେ କାର୍ଯ୍ୟ କରନ୍ତି । ଅଗ୍ନି ଆପଣଙ୍କର ଆଦେଶରେ ପ୍ରାଣୀମାନଙ୍କୁ ପୋଡ଼ି ଦିଅନ୍ତି । କାହିଁକି ଯେ ଅଗ୍ନି ମୋତେ ଦଗ୍ଧ କରି ନାହିଁ, ପବନ ଉଡ଼ାଇ ନେଇ ନାହିଁ କି ଜଳ ଭସାଇ ଦେଇ ନାହିଁ, ତାର କାରଣ ସେ ସମସ୍ତ ଶକ୍ତି ସେମାନଙ୍କର ନାହିଁ । ହେ ପରମେଶ୍ୱର ? ମୁଁ ସମସ୍ତ ଜଗତ ଆପଣଙ୍କ ସ୍ୱରୂପ ଦେଖୁଅଛି, ମୋର ତନେ ହେଲେ ଦୁଃଖ ନାହିଁ । ସମସ୍ତ ଜଗତ ସୁଖମୟ ଦେଖୁଅଛି । ମୋର ପିତା ବୃଥାରେ ଏତେଶ୍ରମ ସ୍ୱୀକାର କରୁଛନ୍ତି । ସମସ୍ତ ଭୂତ ଭବନ୍ମୟ, ମୁଁ ମଧ ଭବନ୍ମୟ, ମୋତେ ସେ କେବେହେଲେ ବାଧା ଦେଇ ପାରିବେ ନାହିଁ । ହେ ଜଗଦୀଶ୍ୱର ! ତୁମ୍ଭ ଠାରେ ମୁଁ ସମସ୍ତ ଭୂତମାନଙ୍କୁ ଦେଖୁଅଛି । ମୋର ପ୍ରଣାମ ଗ୍ରହଣ କରନ୍ତୁ ।' ପ୍ରହ୍ଲାଦଙ୍କର ସ୍ତୁତି ଶୁଣି ଭଗବାନ ବାସୁଦେବ ଅମୃତମୟ ବାକ୍ୟରେ ଆଶ୍ୱାସନା ଦେଇ କହିଲେ—'ବତ୍ସ ଦୈତ୍ୟ-ନନ୍ଦନ ପ୍ରହ୍ଲାଦ ! ଭୟ କର ନାହିଁ, ତୁମ୍ଭର ମଙ୍ଗଳ ହେଉ । ମୁଁ ପିତାଂକ ଦ୍ୱାରା ପୀଡ଼୍ୟମାନ ତୁମ୍ଭଙ୍କୁ ରକ୍ଷାକରିବାକୁ ଆସିଅଛି । ମନୁଷ୍ୟ ଦୁଃଖ ଅନୁଭବ କରିବାକୁ ଜନ୍ମ ଗ୍ରହଣ କରିଥାଏ । ମୋର ଦର୍ଶନ ଲାଭକଲେ ସମସ୍ତ ଦୁଃଖରୁ ବିମୁକ୍ତ ହୁଏ । ମୋତେ ସର୍ବବ୍ୟାପକଭାବେ ଯେଉଁମାନେ ଜାଣିପାରୁଛନ୍ତି, ସେମାନେ ଜନ୍ମ ଓ ମରଣ ଲାଭ କରନ୍ତି ନାହିଁ । ଭକ୍ତମାନଂକଠାରେ ମୋର ଅସୀମ ପ୍ରେମ । ଅତଏବ ମୋର ଭକ୍ତବିରୋଧୀଙ୍କୁ ମୁଁ ଯଥାଶୀଘ୍ର ବାଧା ଦିଏ । କାଲି ମୁଁ ଭୟଂକର ବିଚିତ୍ର ରୂପ ଧାରଣ କରି ମହାବଳ ତୁମ୍ଭର ପିତାଙ୍କୁ ସଂହାର କରିବି । ଦୈତ୍ୟକୁଳ ଭୂଷଣ ! ସେ ସମୟରେ ତୁମେ ଭୟ କରିବ ନାହିଁ । ତୁମ ପିତା ବିଷ୍ଣୁ ଯଦି ସର୍ବବ୍ୟାପକ ତେବେ ଏହି ସ୍ତମ୍ଭରେ ଦେଖାଅ ବୋଲି ଯେତେବେଳେ ତୁମକୁ ବାଧ କରିବେ, ସେତେବେଳେ ମୁଁ ଆବିର୍ଭୂତ ହେବି । ଏହି ପର୍ବତ ଲୋକମାନଂକର ମଙ୍ଗଳ ସାଧନ କରିବ । କଳ୍ପାନ୍ତ ପର୍ଯ୍ୟନ୍ତ ଏହି ପର୍ବତର ରମ୍ୟ ସମତଳ ଭୂମିରେ ବାସ କରିବା ଲୋକ ତୁମ ପରି ସଂସାରଚକ୍ରା-ତିରହିତ ହେବ । ଏହି ପର୍ବତରେ ଗଙ୍ଗା, ଯମୁନା, ସରସ୍ୱତୀ, କାବେରୀ, ନର୍ମଦା, ତୁଙ୍ଗଭଦ୍ରା, ଭୀମରଥୀ, ପୟୋଷ୍ଣୀ ମଳାବହା, ଶତଦ୍ରୁ, ତାମ୍ରପର୍ଣ୍ଣୀ, ଗଣ୍ଡକୀ, ଗୌତମୀ ପ୍ରଭୃତି ପବିତ୍ର ନଦୀମାନେ ଓ ପବିତ୍ର ସମୁଦ୍ରମାନେ ସବୁବେଳେ ମୋର ଆଜ୍ଞାରେ ଧାରାରୂପେ ପ୍ରବାହିତ ହେବେ । ମୁଁ ଏହି ପର୍ବତରେ ସବୁବେଳେ ଭକ୍ତମାନଂକର ସଂରକ୍ଷଣ ସକାଶେ ଅବସ୍ଥାନ କରିବି । ଏହି ପର୍ବତ ଆଜଠାରୁ "ସିଂହାଚଳ" ରୂପେ ଖ୍ୟାତି ଲାଭ କରୁ । ଏହି ପର୍ବତରେ ଥିବା ମୋତେ

ଯେଉଁମାନେ ଶ୍ରଦ୍ଧା ଭକ୍ତି ସହକାରେ ସେବା କରିବେ ସେମାନେ ସମସ୍ତ ପାପ-ବିମୁକ୍ତ ହୋଇ ମୋର ପଦ ଲାଭ କରିବେ । ଲୋକ କଣ୍ଟକ ତୁମ ପିତାଙ୍କୁ ମୁଁ ସଂହାର କଲା ଦିନଠାରୁ ତୁମେ ଶ୍ରଦ୍ଧା ଭକ୍ତିସହ ଯାବଜ୍ଜୀବନ ମୋତେ ଆରାଧନ କରିବ । ଯେଉଁମାନେ ମୋତେ ଆରାଧନା କରିବାକୁ ବିମୁଖ ହେବେ, ସେମାନେ କଳିଯୁଗରେ ଅବତୀର୍ଣ୍ଣ ହେବେ । ମୋତେ ଆରାଧନ କରିବା ସକାଶେ ମନୁଷ୍ୟମାନେ ଯେତେବେଳେ ଶ୍ରଦ୍ଧାଭକ୍ତିପ୍ରବଣ ହେବେ, ସେତେବେଳେ ପୁଣି ମୁଁ ଆବିର୍ଭୂତ ହେବି । ସବୁବେଳେ ସନ୍ନିହିତ ହୋଇ ରହିବି । ଲୋକମାନଙ୍କର ଶ୍ରଦ୍ଧା ଅଶ୍ରଦ୍ଧା ଅନୁସରଣ କରି ଆବିର୍ଭାବ ଓ ତିରୋଭାବ ଆଶ୍ରୟ କରି ଭୁକ୍ତି ଓ ମୁକ୍ତି ଦେଇ ମୁଁ ଏହି ପର୍ବତରେ ବାସ କରିବି । ତୁମର ସାତ୍ତ୍ୱିକ ଆଚାର ବ୍ୟବହାରରେ ମୁଁ ପରମପ୍ରୀତ ହୋଇଅଛି । ତୁମେ ଅଭିମତ ବର ଗ୍ରହଣ କର । ମୋର ବର ପାଇଲେ ମଧ୍ୟ ତୁମେ ଅବଶ୍ୟ ଅହଙ୍କାର ଶୂନ୍ୟ ରହିବ ।' ପ୍ରହ୍ଲାଦ କହିଲେ—'ଦେବ ! ଆପଣ ଯଦି ସନ୍ତୁଷ୍ଟ ଏବଂ ମୋର ଅଭୀଷ୍ଟ ସିଦ୍ଧ କରିବେ, ତେବେ ଆପଣଙ୍କ ପାଦ ପଦ୍ମରେ ମୋର ଅଚଳାଭକ୍ତି ହେଉ, ମୋର ଜିହ୍ୱା ସବୁବେଳେ ଆପଣଙ୍କର ନାମ ସଙ୍କୀର୍ତ୍ତନ କରୁ, ଶିର ଆପଣଙ୍କର ପାଦରେ ସବୁବେଳେ ବନ୍ଦନା କରୁ, ଚିତ୍ତ ସବୁବେଳେ ଆପଣଙ୍କର ଦିବ୍ୟମଙ୍ଗଳ ବିଗ୍ରହ ଧ୍ୟାନ କରୁ । ପ୍ରଭୋ ! ଦୈବବଶତଃ ଯେ କୌଣସି ଜନ୍ତୁ ମୋତେ ପୀଡ଼ା ଦେଲେ ମଧ୍ୟ ଆପଣଙ୍କର ଶରୀରରୂପୀ ସେମାନଙ୍କ ପ୍ରତି ମୋର ହିଂସାବୁଦ୍ଧି ଜାତ ନ ହେଉ' । ଜୈମିନି କହିଲେ—ବ୍ରାହ୍ମଣଗଣ ! ଦୈତ୍ୟପୁତ୍ର ପ୍ରହ୍ଲାଦଙ୍କ ସେହି ବାକ୍ୟମାନ ଶୁଣି ଭଗବାନ୍ ବିଷ୍ଣୁ ଦ୍ୱିଗୁଣ ପ୍ରୀତ ହୋଇ କହିଲେ— 'ତୁମେ ବଡ଼ ଭାଗ୍ୟବାନ ତୁମର ମନୋବାଞ୍ଛା ପୂର୍ଣ୍ଣ ହେଉ, ନିର୍ଭୟରେ ତୁମର ସଂକଳ୍ପ ସାଧନ କର । ସବୁବେଳେ ମୋର ନାମ ସଂକୀର୍ତ୍ତନ କରୁଥାଅ । ମୁଁ ସବୁବେଳେ ତୁମକୁ ରକ୍ଷା କରୁଥିବି ।' ଏହା କହି ଭଗବାନ୍ ନାରାୟଣ ଅନ୍ତର୍ହିତ ହେଲେ । ପ୍ରହ୍ଲାଦ ବିଷ୍ଣୁଙ୍କର ନାମକୀର୍ତ୍ତନ କରି କରି ସମୁଦ୍ରତୀରରୁ ଗୃହାଭିମୁଖେ ପ୍ରସ୍ଥାନ କଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବୈଷ୍ଣବ ଖଣ୍ଡେ ଶ୍ରୀ ସିଂହାଚଳ କ୍ଷେତ୍ର-ମାହାତ୍ମ୍ୟ ବର୍ଣ୍ଣନଂ ନାମ ଊନବିଂଶୋଽଧ୍ୟାୟଃ । ୧୯ ।

—୦—

## ବିଂଶ ଅଧ୍ୟାୟ

ଜୈମିନି — ଦ୍ୱିଜଗଣ ! ଉଦୟକାଳୀନ ଦ୍ୱିତୀୟ ସୂର୍ଯ୍ୟ ସଦୃଶ ଦେଦୀପ୍ୟମାନ ପ୍ରହ୍ଲାଦ ପିତାଙ୍କର ନଗରରେ ପ୍ରବେଶ କଲେ । ବିଷ୍ଣୁଙ୍କର ପାଦ-ଚିନ୍ତକପର ପ୍ରହ୍ଲାଦ ନିର୍ଭୟରେ ଗନ୍ଧ ସଜ୍ଜିତ ରାଜମାର୍ଗରେ ବିଷ୍ଣୁଙ୍କର ନାମମାନ ଅତି ଉଚ୍ଚରେ ଗାଇ ଗାଇ ଚାଲିଲେ ।

ଜୟ ଜୟ ଜଗନ୍ନାଥ    ଜୟ ସର୍ବେଶ୍ୱର
ଜୟ ସର୍ବ ବ୍ୟାପୀ ପ୍ରଭୁ    ଇନ୍ଦ୍ରିୟାଧୀଶ୍ୱର ॥
ଜୟ ପରମାତ୍ମା ଶିବ    ବ୍ରହ୍ମାଦି କାରଣ
ଜୟ ସମୁଦ୍ରସ୍ଥ ପଞ୍ଚ    ଜନ ନିସୂଦନ ॥
ଜୟ ଜୟ ଚରାଚର    ବ୍ରହ୍ମାଣ୍ଡ ଈଶ୍ୱର
ଜୟ କ୍ଷୀର ପାରାବାର-    ଶାୟୀ ପରାତ୍ପର ॥
ଜୟ ବିଶ୍ୱମ୍ଭର ବିଶ୍ୱବ୍ୟାପୀ ବିଶ୍ୱେଶ୍ୱର
ଜୟ ସତ୍ୟ ସଂକଳ୍ପ    ସତ୍ୟର ଆଧାର ।
ଜୟ ପରମ ପବିତ୍ର    ବିନାଶ ରହିତ
ଜୟ କୋଟି ନାମଧାରୀ    ଦୋଷ ବିବର୍ଜିତ ।
ଜୟ ନିର୍ବିକାର ପ୍ରଭୁ    ଆଶ୍ରିତ ବତ୍ସଳ
ଇହ ପର ଫଳ ଦାତା    ଜୟ ଚକ୍ରଧର ॥
ଜୟ ମୁକ୍ତିଦାତା ସୁର    ଅସୁର ମର୍ଦ୍ଦନ
ଜୟ ହିରଣାକ୍ଷ ବକ୍ଷ    ସ୍ଥଳ ବିଦାରଣ ॥
ଜୟ ଚତୁର୍ଭୁଜ ବାସୁ    ଦେବ ସଙ୍କର୍ଷଣ
ପ୍ରଦ୍ୟୁମ୍ନାନିରୁଦ୍ଧ ବ୍ୟୂହରୂପୀ ଜନାର୍ଦ୍ଦନ ।
ଜୟ ଶ୍ରୀପତି ଯାମଳ ଅର୍ଜ୍ଜୁନ ଭଞ୍ଜନ
ଗଜେନ୍ଦ୍ର ତାରଣ ସର୍ବ    ଭୂତଙ୍କ କାରଣ ॥
ଜୟ ଅନନ୍ତ କଲ୍ୟାଣ    ଗୁଣର ଆଧାର
ଜୟ ଲକ୍ଷ୍ମୀଦେବୀ ହୃଦା-    ନନ୍ଦ ଦାୟୀ ବୀର ॥
ଜୟ ବିଶ୍ୱେଶ୍ୱର ପଦ୍ମ    ବିଶାଳ ଲୋଚନ
ଜୟ ପଦ୍ମନାଭ ମଧୁକୈଟଭ—ଭଞ୍ଜନ ।
ଜୟ ପରମ ପୁରୁଷ    ପରାତ୍ପର ହରି
ଜୟ ପ୍ରପଞ୍ଚ ସ୍ୱରୂପୀ    ପୂତନାମ ଧାରୀ ॥

ଜୟ ପରମ ଇଶ୍ୱର   ମହାମାୟାଶ୍ରିତ
ଜୟ ବିଶାଳ ବିଗ୍ରହ   ଜୟ ମଧୁଜିତ ॥
ଜୟ ସର୍ବବିଧ ଫଳ   ଦାତା ଦାମୋଦର
ଜୟ ଶଙ୍କର ସ୍ୱରୂପୀ   ମୋତେ ରକ୍ଷାକର ॥

ପ୍ରହ୍ଲାଦ ଏହିପରି ବିଷ୍ଣୁଙ୍କର ସକଳ ଭୟ ବିନାଶକ ନାମମାନ କୀର୍ତ୍ତନ କରୁଥିବା ଦେଖି ଦୈତ୍ୟମାନେ ଭ୍ରାନ୍ତସ୍ତ ହୋଇ ହିରଣ୍ୟକଶିପୁଙ୍କ ସମୀପରେ ଗଦ୍‌ଗଦ ବାକ୍ୟରେ କହିଲେ—ଦୈତ୍ୟେଶ୍ୱର ! ବର୍ତ୍ତମାନ ଦୈତ୍ୟମାନଙ୍କର ବିନାଶ କାଳ ଉପସ୍ଥିତ । ଆମ୍ଭମାନଙ୍କର ବିଜ୍ଞାପନ ଶୁଣିଲେ ଆପଣ ବିସ୍ମିତ ହେବେ—ସାବଧାନ ହୋଇ ଶ୍ରବଣ କରନ୍ତୁ । କାଲି ଆମ୍ଭେମାନେ ଆପଣଙ୍କର ଆଦେଶରେ ଆପଣଙ୍କ ପୁଅଙ୍କୁ ଦୃଢ଼ ପାଶରେ ବାନ୍ଧି ସମୁଦ୍ରରେ ନିକ୍ଷେପ କରି ଉପରେ ଏକ ବିଶାଳ ପର୍ବତ ଲଦି ଦେଇଥିଲୁ ଏବଂ ସେ ମରିଗଲେ ବୋଲି ନିଶ୍ଚୟ କରି ଆପଣଙ୍କ ଛାମୁରେ ଜଣାଇଥିଲୁ । ସେହି ପ୍ରହ୍ଲାଦ ବର୍ତ୍ତମାନ ନଗରରେ ପ୍ରବେଶ କରି ଦ୍ୱିଗୁଣ ସୂର୍ଯ୍ୟ ପରି ତେଜସ୍ୱୀ ହୋଇ ଅସହ୍ୟ ବିଷ୍ଣୁ ନାମ ଗାନ କରି ନିର୍ଭୟରେ ଭ୍ରମଣ କରୁଅଛନ୍ତି । ଯାହା ଆମ୍ଭେମାନେ ନିଜ ଆଖିରେ ଦେଖିଲୁ, ହେ ଦୈତ୍ୟେଶ୍ୱର ! ଆପଣଙ୍କ ଆଗରେ ତାହା ଜଣାଉଛୁଁ । ବର୍ତ୍ତମାନ କଅଣ କରିବାକୁ ହେବ— ଆପଣ ବିଚାର କରନ୍ତୁ । ଏହିପରି ଦୈତ୍ୟବୀରମାନେ ଜଣାଇଲେ । ଦ୍ୱିଜଗଣ, ଦୈତ୍ୟାଧିପ ହିରଣ୍ୟକଶିପୁ ସେମାନଙ୍କର ଜଣାଣ ଶୁଣି ଯୁଦ୍ଧରେ ପରାଜିତ ହେଲାଭଳି ଅଧୋମୁଖ ହୋଇ ଚିନ୍ତା କରିବାକୁ ଲାଗିଲେ । 'ବର୍ତ୍ତମାନ କଅଣ କରାଯିବ ? ଏହାକୁ ସାଧି କରିବାକୁ କୌଣସି ଉପାୟ ଦିଶୁନାହିଁ, ଏହାହେତୁ ନିଶ୍ଚୟ ମୋର ମରଣହେବା-ପରି ଦିଶୁଅଛି । ଯେଉଁ କାରଣରୁ ସମୁଦ୍ରରେ ନିକ୍ଷେପ କଲେ ମଧ୍ୟ ମରିନାହିଁ ସେହି କାରଣରୁ ନିଜେ ଖଡ୍‌ଗରେ ଛେଦନ କଲେ ମଧ୍ୟ ମରିନାହିଁ । ଏହା ସତ୍ୟ ହେଲେ ମଧ୍ୟ ବୁଦ୍ଧିମାନ୍ ଲୋକ ନିଜ ରକ୍ଷା ସକାଶେ ଯଥାଶକ୍ତି ଚେଷ୍ଟା କରିବା କଥା ।' ଚିନ୍ତାକୁଳ ଦୈତ୍ୟରାଜ ହିରଣ୍ୟକଶିପୁ ଏହିପରି ଆଲୋଚନା କରି ମୃତ୍ୟୁଦ୍ୱାରା ପ୍ରେରିତ ହୋଇ ନିକଟବର୍ତ୍ତୀ ଦୈତ୍ୟଭଟମାନଙ୍କୁ ତାଙ୍କ ଆଦେଶ ଦେଲେ 'ଦାନବଗଣ ! ଶୀଘ୍ର ତୁମେମାନେ ମୋର ସେହି ପୁତ୍ରକୁ ଧରି ନେଇଆସ । ମୁଁ ନିଜେ ତାର କୃତ୍ୟମାନ ଦେଖିବି ।' ପ୍ରଭୁଙ୍କ ଆଜ୍ଞାରେ ଭଟମାନେ ପ୍ରହ୍ଲାଦଙ୍କୁ ନେଇ ହିରଣ୍ୟକଶିପୁଙ୍କ ସମ୍ମୁଖରେ ଉପସ୍ଥାପିତ କଲେ । ପ୍ରହ୍ଲାଦ ବିନୟ ସହକାରେ ପିତାଙ୍କର ଚରଣରେ ପ୍ରଣିପାତ କଲେ । ହିରଣ୍ୟକଶିପୁ

ବିସ୍ମିତ ପ୍ରହ୍ଲାଦଙ୍କୁ ଆଲିଙ୍ଗନ କରି ଓ ମୂର୍ଦ୍ଧାରେ ଆଘ୍ରାଣ କରି କହିଲେ— ପୁତ୍ର ପ୍ରହ୍ଲାଦ ! ତୁମ୍ଭର ଅସାଧାରଣ ବଳ ଅଛି ବୋଲି ମୁଁ ଜାଣି ପାରୁଛି । ମକରାଦି ଦୁଷ୍ଟଜନ୍ତୁ ପୂର୍ଣ୍ଣ ସମୁଦ୍ରରେ ନିକ୍ଷେପ କଲେ ମଧ୍ୟ ତୁମର ପ୍ରାଣ ଯାଇନାହିଁ । କ୍ରୂର ବିଷଧର ସର୍ପ, ସୁତୀକ୍ଷ୍ଣ କରାଳ ଆୟୁଧ ଓ ପ୍ରବଳ ପରାକ୍ରମ ଦିଗ୍‌ଗଜମାନଙ୍କ ଦ୍ୱାରା ମଧ୍ୟ ତୁମ୍ଭର ମରଣ ଘଟିନାହିଁ । ତୁମ୍ଭେ ସକଳ ପ୍ରତିକାର ଉପାୟ ଜାଣିଛ ବୋଲି ମୋର ଧାରଣା । ଦେବତାମାନେ ମଧ୍ୟ ମୋର ପୁତ୍ରରୂପେ ଜନ୍ମ ଗ୍ରହଣ କରିବାକୁ ଲାଳାୟିତ ବୋଲି ଲୋକେ କହୁଅଛନ୍ତି । ତୁମେ ତୁମ୍ଭର ପୂର୍ବ ଜନ୍ମାର୍ଜିତ ପୁଣ୍ୟବଳରେ ମୋର ପୁତ୍ରରୂପେ ଜନ୍ମଲାଭ କରି କେବଳ ମୂର୍ଖତାବଶତଃ ମୋର ମହତ୍ତ୍ୱ ବୁଝିପାରୁନାହିଁ । ତୁମ୍ଭେ ଦୈତ୍ୟହନ୍ତା ବିଷ୍ଣୁଙ୍କ ପକ୍ଷ ପରିତ୍ୟାଗ କରି, ମୋର ପକ୍ଷ ଅବଲମ୍ବନ କର । ଦେବତାମାନେ ମୋ ଦ୍ୱାରା ପରାଜିତ ହୋଇଅଛନ୍ତି । ତୁମ୍ଭେ ମଧ୍ୟ ସେମାନଙ୍କୁ ଜୟ କରି ନିରୂପମ ଭୋଗମାନ ଅନୁଭବ କର । ମୋତେ ବାରମ୍ବାର ଦୁଃଖ ଦିଅନାହିଁ । ମୋ ସହିତ ସକଳ ପ୍ରକାର ସୌଖ୍ୟ ଅନୁଭବ କର ।' ଦୈତ୍ୟରାଜ ସେପରି ପ୍ରବୋଧ ଦେଲାପରେ ସମୀପବର୍ତ୍ତୀ ମନ୍ତ୍ରୀମାନେ ମଧ୍ୟ ପ୍ରହ୍ଲାଦଙ୍କୁ ସେହି ବିଷୟ ବିଶଦ ଭାବେ ବୁଝାଇଲେ । ପ୍ରହ୍ଲାଦ ବିନୟ ସହକାରେ ପିତା ଓ ମନ୍ତ୍ରୀମାନଙ୍କର ପ୍ରବୋଧ ଶୁଣି ଉତ୍ତର ଦେଲେ— ପିତା, ମୋ 'ବାକ୍ୟମାନଙ୍କରେ ଆପଣ କାହିଁକି ଦୁଃଖ କରୁଅଛନ୍ତି ? ଆପଣ ପିତା ଓ ପ୍ରଭୁ । ଆପଣଙ୍କ ସମ୍ମୁଖରେ ଏହି ଅଯୋଗ୍ୟ ବାଳକ କ'ଣ ଖରାପ କଥା କହୁଛି । ଚତୁର୍ଭୁଜ ବିଷ୍ଣୁ ବଳହୀନ, ବଳବାନ୍, ଦୈତ୍ୟ, ଦେବତା—ସମସ୍ତଙ୍କର ସମ୍ବଳ । ପିତା ! ବିଷ୍ଣୁଙ୍କୁ ପୂଜା ନ କଲେ ଜନ୍ମଜନ୍ମାନ୍ତରରେ କୌଣସିମତେ ବଳ ଐଶ୍ୱର୍ଯ୍ୟ ଭୂପ୍ରଭୃତି ନିଶ୍ଚଳ ସମ୍ପତ୍ତି କଦାପି ମିଳିବ ନାହିଁ । ଯାହାଙ୍କୁ ଭୟ କରି ବାୟୁ ବହେ, ସୂର୍ଯ୍ୟ ଉଦୟ ହୁଏ, ଅଗ୍ନି ଦଗ୍ଧ କରେ, ଯମ ପ୍ରାଣ ନିଏ, ଯାହାଙ୍କ ଦ୍ୱାରା ଦୃଶ୍ୟମାନ ଏହି ସ୍ଥାବର ଜଙ୍ଗମାତ୍ମକ ସମସ୍ତ ଜଗତ ପରିବ୍ୟାପ୍ତ— ତାଙ୍କୁ ଥରେ ଧ୍ୟାନ କରନ୍ତୁ । ଦେଖିବେ ପିତା ! ସମସ୍ତ ସୁଖମୟ ତଳେ ହେଲେ ଦୁଃଖ କୌଣସି ଠାରେ ନାହିଁ । ଯାହାଙ୍କୁ ସ୍ମରଣ କରିବା ଦ୍ୱାରା ମୋତେ ଏ ସଂସାର ସମୁଦ୍ର ଏକ ପାଦ ପରି, ଅପାର ସମୁଦ୍ର ଗୋଷ୍ପଦ ପରି ବୋଧ ହେଉଅଛି, ସେହି ବିଷ୍ଣୁଙ୍କୁ ସବୁବେଳେ ମନରେ ସ୍ମରନ୍ତୁ କରନ୍ତୁ । ଦୈତ୍ୟାଧିରାଜ, ଆପଣ ଦୈତ୍ୟାରି ପକ୍ଷ ଛାଡ଼ି ଆମ୍ଭ ପକ୍ଷ ଆଶ୍ରୟ କର ବୋଲି ଆପଣ ଉପଦେଶ ଦେଉଅଛନ୍ତି । ମୁଁ ଠିକ୍ ଦୈତ୍ୟରୂପ ଅରି ପକ୍ଷ ଛାଡ଼ି ସର୍ବଭୂତମାନଙ୍କ ଆତ୍ମା ବିଷ୍ଣୁଙ୍କ ପକ୍ଷ ଅବଲମ୍ବନ କରି ଆପଣଙ୍କ ଆଦେଶ

ପାଳନ କରୁଅଛନ୍ତି । ଭୂତଳରେ ଥିବା ଚରାଚରର ସମସ୍ତ ପଦାର୍ଥ ହିଁ ଭୁବନର ଅଧୀଶ୍ୱର ସର୍ବବ୍ୟାପୀ ବିଶ୍ୱରୂପୀ ସର୍ବେଶ୍ୱର ନାରାୟଣଙ୍କର ଶରୀର । ନିଜର ସୁଖ ଦୁଃଖ ପରି ସମସ୍ତ ଜଗତର ସୁଖ ଦୁଃଖକୁ ଦେଖୁଥିବା ଲୋକ ପକ୍ଷେ ସମସ୍ତ ଜଗତ ସ୍ୱାତ୍ମମୟ ଦେଖାଯାଏ । ଆପଣଙ୍କଠାରେ, ମୋ ଠାରେ, ଅନ୍ୟ ପ୍ରାଣୀମାନଙ୍କଠାରେ ମଧ୍ୟ ସମାନ ଭାବ ପୋଷଣ କରି ଭେଦବୁଦ୍ଧି ପରିହାର କରି ସବୁବେଳେ ସୁଖ ଅନୁଭବ କରନ୍ତୁ ।'

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ଶ୍ରୀ ସିଂହାଚଳ କ୍ଷେତ୍ର
ମାହାତ୍ମ୍ୟ ବର୍ଣ୍ଣନଂ ନାମ ବିଂଶୋଽଧ୍ୟାୟଃ ।୨୦।

—୦—

## ଏକବିଂଶ ଅଧ୍ୟାୟ

ଜୈମିନି — ଦୈତ୍ୟରାଜ ପ୍ରହ୍ଲାଦଙ୍କର ସେହି ବାକ୍ୟମାନ ଶୁଣି ଭୟଙ୍କର କ୍ରୋଧରେ ସମସ୍ତ ଶରୀର କମ୍ପାଇ ଖଡ୍ଗ ଉତ୍ତୋଳନ କଲେ । ସେ ଖଡ୍ଗ ଉତ୍ତୋଳନ କରିବା ଦେଖି ତିନି ଲୋକର ଅଧିବାସୀ ଦେବ ଦାନବ ମନୁଷ୍ୟାଦି ପ୍ରାଣୀମାନେ ଥରି ଉଠିଲେ । ଦୈତ୍ୟରାଜ କହିଲେ— ମୂଢ଼ ! ସବୁବେଳେ ବିଷ୍ଣୁ, ବିଷ୍ଣୁ, ବୋଲି ବୃଥାରେ ଘୋଷୁଥିବା ଶୁଣୁଅଛି । ତୋର ବିଷ୍ଣୁ କେଉଁଠାରେ ଅଛି ? କିଏ ଦେଖିଅଛି କହିଲୁ ।' ପ୍ରହ୍ଲାଦ କହିଲେ— ବିଷ୍ଣୁ ସର୍ବବ୍ୟାପୀ ଏହିଠାରେ ଅଛନ୍ତି, ସେଠାରେ ନାହାନ୍ତି ବୋଲି ସନ୍ଦେହ କରନ୍ତୁ ନାହିଁ । ବିଷ୍ଣୁ ସବୁବେଳେ ସମଗ୍ର ବିଶ୍ୱବ୍ୟାପି କରି ରହି ଅଛନ୍ତି । ଜଗତରେ ଯାହା ଦେଖାଯାଉଅଛି, ଶୁଣା ଯାଉଅଛି ଓ ଚିନ୍ତା କରାଯାଉଅଛି ସେ ସମସ୍ତ ସ୍ଥଳରେ ବିଷ୍ଣୁ ଅବସ୍ଥାନ କରନ୍ତି, ଭିତରେ ବାହାରେ ସର୍ବତ୍ର ବିଷ୍ଣୁ ବ୍ୟାପିକରି ରହିଛନ୍ତି । ସେ ନଥିଲେ ତୃଣାଗ୍ର ମଧ୍ୟ କମ୍ପିତ ହେବ ନାହିଁ । ସେହି ବିଷ୍ଣୁ ଚୈତନ୍ୟ ରୂପେ ସର୍ବତ୍ର ବିଦ୍ୟମାନ । ଭକ୍ତି ବଶତଃ ମୋ ଭିତରେ ଏବଂ ଦ୍ୱେଷ-ବଶତଃ ଆପଣଙ୍କ ଭିତରେ ମଧ୍ୟ ଅବସ୍ଥାନ କରନ୍ତି । ଦେବ, ଦାନବ, ସ୍ଥାବର-ଜଙ୍ଗମ ପ୍ରାଣୀମାନଙ୍କ ଭିତରେ ମଧ୍ୟ ଅଛନ୍ତି । ବ୍ରହ୍ମାଙ୍କର ସୃଷ୍ଟି ଯେ କୌଣସି ପଦାର୍ଥରେ ବିଷ୍ଣୁ ନଥାଇ ନାହିଁ । ସମସ୍ତ ଜଗତ ବିଷ୍ଣୁମୟ ବୋଲି ବେଦାନ୍ତରେ ଉଦ୍‌ଘୋଷିତ ହୋଇଅଛି ।' ହିରଣ୍ୟକଶିପୁ କହିଲେ- 'ବିଷ୍ଣୁ ସର୍ବବ୍ୟାପୀ ବୋଲି

କହୁଅଛୁ । ମୁଁ ଯେଉଁଠାରେ ଦେଖାଅ ବୋଇଲେ ସେହିଠାରେ ଦେଖାଇ ପାରିବୁ କି ?' ପ୍ରହ୍ଲାଦ କହିଲେ—'ତାଙ୍କୁ ମୁଁ କଅଣ ଦେଖାଇବି ? ଆପଣ ତନ୍ମୟ ହୋଇ ସେହି ସର୍ବବ୍ୟାପୀ ବିଷ୍ଣୁଙ୍କୁ ଯେଉଁଠାରେ ଦେଖିବାକୁ ଇଚ୍ଛିବେ ସେହିଠାରେ ଅବଶ୍ୟ ଦେଖିପାରିବେ ।' ହିରଣ୍ୟକଶିପୁ କହିଲେ—'ମୂଢ଼ ! ତୁ କହିଲପରି ବିଷ୍ଣୁ ବାହାରେ କୌଣସିଠାରେ ଦେଖାଯାଉନାହିଁ । ଯଦି ସେ ସର୍ବତ୍ରଠାରେ ଭିତରେ ବାହାରେ ରହିଛନ୍ତି, ତେବେ ଏହି ସ୍ତମ୍ଭରେ ତାଙ୍କୁ ଦେଖାଅ ।' ଜୈମିନି କହିଲେ—ଦ୍ୱିଜଗଣ ! ଦୈତ୍ୟାଧିରାଜ ସେପରି କହି ହଠାତ୍ ଉଠି ଏକ ହାତରେ ପ୍ରହ୍ଲାଦଙ୍କର କେଶ ଭିଡ଼ିଧରି ଅନ୍ୟ ହସ୍ତରେ ଖଡ଼ଗ ଉତ୍ତୋଳନ କରି ହୁଂକାର କରି ସ୍ତମ୍ଭରେ ପଦାଘାତ କଲେ । ସ୍ତମ୍ଭରେ ପାଦ ବାଜିଲା ମାତ୍ରେ ସର୍ବେଶ୍ୱର ବିଷ୍ଣୁ ସେହି ସ୍ତମ୍ଭ ବିଦୀର୍ଣ୍ଣ କରି ନରସିଂହ ସ୍ୱରୂପ ଧାରଣ କରି ଭୀଷଣ ଦଂଷ୍ଟ୍ରାରେ ହିରଣ୍ୟକଶିପୁର ଭୟ ଉତ୍ପାଦନ କରି ଆବିର୍ଭୂତ ହେଲେ । ବିଷ୍ଣୁ ସ୍ତମ୍ଭରୁ ସ୍ୱଳ୍ପାକାର ଧାରଣ କରି ଆବିର୍ଭୂତ ହୋଇ କ୍ରମେ କ୍ରମେ ବଢ଼ି ମେରୁମନ୍ଦର ପର୍ବତ ସମାନ ବିଶାଳରୂପ ଧାରଣ କଲେ । ଯୁଗାନ୍ତକାଳୀନ ମେଘପରି ଗର୍ଜ୍ଜନ କଲେ । ମସ୍ତକର କେଶମାନ ଦିଗଦିଗନ୍ତରେ ବ୍ୟାପିଥିଲା । ବିଜୁଳି ପରି ଝଟକୁଥିବା କେଶରମାନ ଭୁଜ ଉପରେ ଲମ୍ବିଥିଲା । ନେତ୍ରଦ୍ୱୟ ଜାଜ୍ୱଲ୍ୟମାନ ଅଗ୍ନିପରି ପ୍ରଖର ଦେଖା ଯାଉଥିଲା । ବିବୃତ ମୁଖ ଲହଲହ ଜିହ୍ୱା, ଉତ୍ତୁଙ୍ଗ ଭୁଜ, ସୁତୀକ୍ଷ୍ଣ ନଖ, ଏବଂ ଅଗ୍ନିଶିଖା ପରି ପ୍ରଖର ନିଶ୍ୱାସର ସହ ଅଦ୍ଭୁତ ମୃଗ ରୂପ ଧାରଣ କରି ମସ୍ତକ କମ୍ପାଇ ହସ୍ତମାନ ବିକ୍ଷିପ୍ତ କରି, କ୍ରୋଧରେ ଜିହ୍ୱାରେ ସୃକ୍କଣି ଲେହନ କରି ହୁଂକାରରେ ଦିଗମାନଙ୍କୁ ବିଚଳିତ କରି ରୌଦ୍ର ବୀଭତ୍ସରସ ପୂର୍ଣ୍ଣ ଅଟ୍ଟହାସରେ ବ୍ରହ୍ମାଣ୍ଡ ବିଦୀର୍ଣ୍ଣ କରି ପଦାଘାତରେ ଭୂମି ସହିତ କୁଳ ପର୍ବତମାନଙ୍କୁ ପ୍ରକମ୍ପିତ କରି ନରସିଂହ ରୂପୀ ନାରାୟଣ କ୍ରୋଧରେ ପୁନ ପ୍ରହ୍ଲାଦଙ୍କୁ ହାଣିବାକୁ ଖଡ୍ଗ ଉତ୍ତୋଳନ କରୁଥିବା ହିରଣ୍ୟକଶିପୁର କେଶକୁ ସିଂହ ଗଜକୁ ଆକ୍ରମଣ କଲାପରି ଅନାୟାସରେ ଧରିଲେ । ରାକ୍ଷସଶ୍ରେଷ୍ଠ ହିରଣ୍ୟକଶିପୁ ଧୀର ଗମ୍ଭୀର ବାକ୍ୟରେ ବିଷ୍ଣୁଙ୍କୁ ନିନ୍ଦାକରି ଦକ୍ଷତା ସହକାରେ ନିଜ କେଶ ମୁକ୍ତ କରି ଅସୁର ମାୟାରେ ନାନାରୂପ ଧାରଣ କରି ବ୍ରହ୍ମଦତ୍ତ ବରରେ ଗର୍ବିତ ହୋଇ ଦ୍ୱନ୍ଦ୍ୱ ଯୁଦ୍ଧ କରିବାକୁ ଆରମ୍ଭ କଲେ । ସିଂହ ସହିତ ହସ୍ତୀ ପରି, ବ୍ୟାଘ୍ର ସହିତ ହରିଣ ପରି, ଗରୁଡ଼ ସହିତ ସର୍ପ ପରି, ମାର୍ଜାର ସହିତ ମୂଷିକ ପରି, ସେହି ନରସିଂହଙ୍କ ସହିତ ହିରଣ୍ୟକଶିପୁ ଯୁଦ୍ଧ କଲେ । ରାକ୍ଷସରାଜ ହିରଣ୍ୟକଶିପୁ ମାୟାବଳରେ ଯେଉଁ ଯେଉଁ ରୂପ

ଧାରଣ କରି ଦେଖାଦେଉଥିଲେ ନରସିଂହ ସେହି ସେହି ରୂପ ମାନଙ୍କରେ ଦୈତ୍ୟଙ୍କର ରୂପ ଧାରଣ କରି ତାଙ୍କୁ ଆକ୍ରମଣ କରୁଥିଲେ । ପରସ୍ପର ଜୟା-ଭିଳାଷୀ ନରସିଂହ ଓ ଦୈତ୍ୟରାଜଙ୍କ ମଧ୍ୟରେ ଅତୀବ ଭୀଷଣ ସଂଗ୍ରାମ ହେଲା । ନରସିଂହ ଅଧିକ କ୍ରୋଧରେ ଯୁଗାନ୍ତକାଳୀନ ଅଗ୍ନି ପରି ଦେଦୀପ୍ୟମାନ ହୋଇ ଦାବାନଳ ତୃଣକୁ ଦଗ୍ଧ କଲା ପରି ରାକ୍ଷସକୁ ଦଗ୍ଧ କଲେ । ସେହି ମାୟାବୀ ରାକ୍ଷସ ସହିତ ଯୁଦ୍ଧ କଲାବେଳେ ବିଷ୍ଣୁ ନାନା ପ୍ରକାର ନରସିଂହ ରୂପ ଧାରଣ କରିଥିଲେ । ସେ ସମସ୍ତ ରୂପ ମଧ୍ୟରୁ ଘୋରରୁ ଘୋର ପ୍ରଶାନ୍ତ ୩୨ ପ୍ରକାର ପ୍ରଧାନ ରୂପ ପ୍ରାଚୀନ ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଅଛି । ଦ୍ୱିଜଗଣ ! ସେ ସମସ୍ତ ରୂପ ମୁଁ ଆପଣମାନଙ୍କୁ କହୁଅଛି—ଅବଧାରଣ କର- ୧ କୁନ୍ଦପାତ ନୃସିଂହ ୨ କୋପ ନୃସିଂହ ୩ ଦିବ୍ୟ ନୃସିଂହ ୪ ବ୍ରହ୍ମାଣ୍ଡ ନୃସିଂହ ୫ ସମୁଦ୍ର ନରସିଂହ ୬ ବିଶ୍ୱରୂପ ନୃସିଂହ ୭ ବୀର ନୃସିଂହ ୮ କ୍ରୂର ନୃସିଂହ ୯ ଜ୍ୱାଳାମୁଖ ନୃସିଂହ ୧୦ ରୌଦ୍ର ନୃସିଂହ ୧୧ ଧୂମ୍ର ନୃସିଂହ ୧୨ ବ୍ୟାଘ୍ର ନୃସିଂହ ୧୩ କଙ୍କାଳ ନୃସିଂହ ୧୪ ଗ୍ରାମ ନୃସିଂହ ୧୫ ପାତାଳ ନୃସିଂହ ୧୬ ଆକାଶନୃସିଂହ ୧୭ ବଜ୍ର ନରସିଂହ ୧୮ ଚକ୍ର ନୃସିଂହ ୧୯ ଶଙ୍ଖ ନୃସିଂହ ୨୦ ସତ୍ୟ ନୃସିଂହ ୨୧ ଅଦ୍ଭୁତ ନରସିଂହ ୨୨ ଦେବଗ ନୃସିଂହ ୨୩ ବିଦାରଣ ନୃସିଂହ ୨୪ ଘୋର ନୃସିଂହ ୨୫ ସିଦ୍ଧ ନରସିଂହ ୨୬ ଶାନ୍ତ ନରସିଂହ ୨୭ ଯୋଗାନନ୍ଦ ନୃସିଂହ ୨୮ ଲକ୍ଷ୍ମୀନୃସିଂହ ୨୯ ଭଦ୍ର ନରସିଂହ ୩୦ ରାଜ ନୃସିଂହ ୩୧ ସିଂହାଚଳବାସୀ ନୃସିଂହ ୩୨ ବରାହ ନୃସିଂହ—ଏହି ୩୨ ପ୍ରକାର ନରସିଂହ ରୂପ ପ୍ରସିଦ୍ଧ । ଏହି ବରାହ ନରସିଂହ ସମସ୍ତ ଲୋକମାନଙ୍କୁ ଭକ୍ତି ଓ ମୁକ୍ତି ଦେବାରେ ପ୍ରସିଦ୍ଧ ଲାଭ କରି ଅଛନ୍ତି । ହିରଣ୍ୟକଶିପୁ ସହିତ ଯୁଦ୍ଧ କଲାବେଳେ, ତା' ପୂର୍ବରେ ଏବଂ ପରେ ମଧ୍ୟ ବିଷ୍ଣୁ ଧାରଣ କରିଥିବା ପ୍ରଧାନ ନରସିଂହ ରୂପମାନ ତୁମ୍ଭମାନଙ୍କୁ କହିଲି । ଏହିପରି ନରସିଂହ ଓ ଦୈତ୍ୟରାଜ ଭୟଙ୍କରଭାବେ ଶହେ ବର୍ଷ ପର୍ଯ୍ୟନ୍ତ ଦିନ ରାତି ବିଶ୍ରାମ ନ ଥାଇ ଭୟଙ୍କର ଯୁଦ୍ଧ କଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁ ଖଣ୍ଡେ ସିଂହାଚଳ କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନଂ ନାମ ଏକବିଂଶୋଽଧ୍ୟାୟଃ ।୨୧।

—tct—

# ଦ୍ୱାବିଂଶ ଅଧ୍ୟାୟ

ଦେବତାମାନେ ନରସିଂହ ଓ ଦୈତ୍ୟରାଜଙ୍କର ଭୟଙ୍କର ଯୁଦ୍ଧ ଦେଖି ଅତ୍ୟନ୍ତ ଚିନ୍ତିତ ହେଲେ । ସମସ୍ତ ଦେବତାମାନେ ମେଘମାନଙ୍କ ଅନ୍ତରାଳରେ ଅଦୃଶ୍ୟ ରୂପେ ଅବସ୍ଥାନ କରି ଦାରୁଣ ଯୁଦ୍ଧ ଦେଖି ଅଦ୍ଭୁତ ରୂପଧାରୀ ନରସିଂହଙ୍କୁ ମୃଦୁ ସ୍ୱରରେ କହିଲେ—'ସନ୍ଧ୍ୟା ସମୟ ଆସୁଅଛି । ସନ୍ଧ୍ୟା ସମୟରେ ରାକ୍ଷସମାନଙ୍କର ବଳ ବଢ଼ିଥାଏ । ପରମେଶ୍ୱର ! ଶୀଘ୍ର ଦୈତ୍ୟରାଜ ହିରଣ୍ୟକଶିପକୁ ସଂହାର କରନ୍ତୁ । ଏହା ଆପଣଙ୍କର ବିନୋଦନର ସମୟ ନୁହେଁ । ଆମ୍ଭେମାନେ ଭୟରେ ଥରହର । ଏହାଦ୍ୱାରା ଇନ୍ଦ୍ରାଦି ଦେବତା ସହିତ ସମସ୍ତ ଭୁବନ ବିଶେଷ ଭାବେ ପରିପୀଡ଼ିତ । ଆମ୍ଭମାନଙ୍କର ବିରୋଧୀ ଏହି କ୍ଷୁଦ୍ର ରାକ୍ଷସକୁ ଶୀଘ୍ର ସଂହାର କରନ୍ତୁ । ହିରଣ୍ୟକଶିପୁ ବଞ୍ଚି ରହିଲେ ଆଉ ଆମ୍ଭମାନଙ୍କର ଗତି ନାହିଁ । ରାକ୍ଷସନାଶକାରୀ ଏହି ଅଦ୍ଭୁତ ରୂପ ଆଉ ଆମ୍ଭେମାନେ ଦେଖି ସହ୍ୟ କରିପାରୁ ନାହୁଁ । ନରସିଂହ ଦେବ, ଆପଣଙ୍କୁ ନମସ୍କାର ।' ଦୈତ୍ୟ ପ୍ରପୀଡ଼ିତ ଦେବତାମାନଙ୍କର ବିଜ୍ଞାପନ ଶୁଣି ନରସିଂହ ଶତ୍ରୁମାନଙ୍କର ଉଦ୍ବେଗଜନକ ଭୟଂକର ଅଟ୍ଟହାସ କଲେ । ସେ ସମୟରେ ନରସିଂହ ଅତ୍ୟନ୍ତ କ୍ରୋଧରେ ଗୃହାଙ୍ଗଣ ମଧ୍ୟରେ ତାକୁ ଜୟ କରିବା ଅସମ୍ଭବ ମନେ କରି କେଶ ଗୁଚ୍ଛ ଆକର୍ଷଣ କରି ନିଜ କୋଳରେ ସ୍ଥାପନ କରି ସିଂହ ମୃଗକୁ ଛିନ୍ନ କଲା ପରି ଅନାୟାସରେ ବଜ୍ର ସମାନ ନଖ ମାନଙ୍କରେ ବିଦୀର୍ଣ୍ଣ କଲେ । ସୁରଦ୍ୱେଷୀ ଦୈତ୍ୟ ନରସିଂହଙ୍କ ଦ୍ୱାରା ବିଦୀର୍ଣ୍ଣ ହେବା ଦେଖି ଦେବତାମାନେ ପ୍ରାଣ ପାଇ ଧୈର୍ଯ୍ୟ ଧାରଣ କଲେ । ଦାନବକୁ ବିଦୀର୍ଣ୍ଣ କରୁଥିବା ନରସିଂହଙ୍କୁ ଦେଖି ଦେବତାମାନେ ପରମ ସନ୍ତୋଷ ଲାଭ କଲେ ଏବଂ ନନ୍ଦନବନରୁ ସୁବାସନାପୂର୍ଣ୍ଣ ପୁଷ୍ପ ବୃଷ୍ଟି କଲେ । କେତେକ ଦେବତା ଦୁନ୍ଦୁଭି ବଜାଇଲେ । କେତେକ ଆନନ୍ଦରେ ଗମ୍ଭୀର କୋଳାହଳ କଲେ । ଗନ୍ଧର୍ବମାନେ ବୀଣା ବାଦନ କରି ସୁଲଳିତ ଗାନ କଲେ । ଅପ୍ସରାମାନେ ମଣ୍ଡଳ ବାନ୍ଧି ଆନନ୍ଦରେ ନୃତ୍ୟ କଲେ । ହିରଣ୍ୟକଶିପୁର ମରଣ ଦେଖି ଦେବତାମାନେ ନରସିଂହ ସ୍ୱାମୀଙ୍କର ନାନାବିଧ ସ୍ତୁତି କରି ବହୁବିଧ ଉତ୍ସବ କରି ନିଜ ସନ୍ତୋଷର ପରିଚୟ ଦେଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ର-
ମାହାତ୍ମ୍ୟ ବର୍ଣ୍ଣନଂ ନାମ ଦ୍ୱାବିଂଶୋଽଧ୍ୟାୟଃ ।୨୨।

# ତ୍ରୟୋବିଂଶ ଅଧ୍ୟାୟ

ପରେ ବ୍ରହ୍ମା ଇନ୍ଦ୍ର ପ୍ରଭୃତି ସମସ୍ତ ଦେବତାମାନେ ନରସିଂହଦେବଙ୍କ— ସମୀପକୁ ଆସି ବେଦୋକ୍ତ ସ୍ତୋତ୍ରରେ ସ୍ତୁତି କରି ସନ୍ତୁଷ୍ଟ କଲେ । ଦେବତାମାନେ କହିଲେ— "ପ୍ରଣବସ୍ୱରୂପୀ ନରସିଂହଙ୍କୁ ଆମର ନମସ୍କାର । ଆପଣ ହିରଣ୍ୟକଶିପୁକୁ ସଂହାର କଲେ । ଆପଣ ଅସୁରଙ୍କର ଅନ୍ତକ (ଯମ) ସ୍ୱରୂପ, ପ୍ରହ୍ଲାଦଙ୍କୁ ଉଦ୍ଧାର କଲେ । ଆପଣ ବିରାଟ୍ ସ୍ୱରୂପ । ଆପଣଙ୍କର ଶିର ଅସଂଖ୍ୟ ହସ୍ତ ଅସଂଖ୍ୟ, ନେତ୍ର ଅସଂଖ୍ୟ । ଆପଣ ଭୂମିକୁ ଉଦ୍ଧାର କରିଅଛନ୍ତି । ଆପଣ ବର୍ତ୍ତମାନ ଭବିଷ୍ୟତ୍ ଓ ଅତୀତ କାଳ ସ୍ୱରୂପ । ଆପଣ ତିନି ଭୁବନର ଅଧୀଶ୍ୱର । ଆପଣ ଅନ୍ନମୟ ଏବଂ ଅନ୍ନଠାରୁ ବଳି ମଧ୍ୟ ଅଧିକ ଉପାଦେୟ । ସମସ୍ତ ଭୂତମାନଙ୍କର ସମାଶ୍ରୟ ଏହି ବିଶାଳ ବ୍ରହ୍ମାଣ୍ଡ ଆପଣଙ୍କର ଏକ ପାଦ ଏବଂ ପରମ ଆକାଶ ଆପଣଙ୍କର ତିନି ପାଦ ମାତ୍ର । ଆପଣ ଠାରୁ ବିରାଟ୍, ବିରାଟରୁ ବ୍ରହ୍ମା, ତାଙ୍କଠାରୁ ଏହି ବିଶ୍ୱବ୍ରହ୍ମାଣ୍ଡ ଜାତହୋଇଅଛି । ଆପଣ ଆଦିଅନ୍ତ ରହିତ ପରାତ୍ପର ଓ ପୁରାଣ ପୁରୁଷ । ଆପଣଙ୍କ ମହିମା ଆପଣଙ୍କ ଦ୍ୱାରା ସୃଷ୍ଟ ଜୀବ କପରି ବର୍ଣ୍ଣନ କରିବାରେ ସମର୍ଥ ହେବ ? କଦାପି ନୁହେଁ । ଆପଣଙ୍କର ମହିମା ବାକ୍ୟରେ ପ୍ରକାଶ କରିବା ଅସମ୍ଭବ । ଆପଣଙ୍କର ମହିମାମୟ ନିବାସ ସ୍ଥାନର ମହିମା ମଧ୍ୟ କଳନା କରିବା ଶକ୍ତିର ବହିର୍ଭୂତ । ଏହି ଆନନ୍ଦମୟ ଆପଣଙ୍କର ସ୍ଥାନକୁ ଆପଣଙ୍କ କଟାକ୍ଷ ପ୍ରଭାବରେ ଯେଉଁ ବ୍ୟକ୍ତି କଳନା କରି, ଧ୍ୟାନକରି ମନୋନେତ୍ରରେ ସାକ୍ଷାତ୍ କରି ବନ୍ଦନ କରେ, ତା'ପକ୍ଷରେ ଜନ୍ମ, ଜରା, ମରଣାଦି ଭୟ କେବେ ହେଲେ ଘଟେ ନାହିଁ । ଆପଣଙ୍କର ଆବିର୍ଭାବ ତାହା ପ୍ରମାଣିତ କରୁଅଛି । ପ୍ରଭୋ ! ଯେଉଁ କାରଣରୁ ଦୈତ୍ୟତନୟ ପ୍ରହ୍ଲାଦଙ୍କୁ ବର୍ତ୍ତମାନ ଆପଣ ରକ୍ଷା କଲେ ସେହି ସ୍ୱାଭାବ ସିଦ୍ଧ କାରଣରୁ ସମସ୍ତଙ୍କୁ ସମାନ ଭାବେ ଦେଖି ଆମ୍ଭମାନଙ୍କୁ ରକ୍ଷା କରି ଆସୁଅଛନ୍ତି । ଆପଣଙ୍କୁ ଆମ୍ଭମାନଙ୍କର ନମସ୍କାର । ଶରଣାଗତ ଆମମାନଙ୍କୁ ରକ୍ଷାକରନ୍ତୁ । ଏହିପରି ସ୍ତୁତିକରି ଦେବତାମାନେ ସାଷ୍ଟାଙ୍ଗ ପ୍ରଣିପାତକରି ଉଠୁଥିବାରହିତ ହେଲେ ମଧ୍ୟ ଧୃତଭଳି ହାତଯୋଡ଼ି ଛିଡ଼ା ହେଲେ । ମହାଲକ୍ଷ୍ମୀ ପଦ୍ମ ଧରି ନରସିଂହଙ୍କ ଏକ ପାର୍ଶ୍ୱରେ ଦଣ୍ଡାୟମାନ ହୋଇଥିଲେ । ପ୍ରହ୍ଲାଦ ହାତଯୋଡ଼ି ଅପର ପାର୍ଶ୍ୱରେ ଛିଡ଼ା ହୋଇଥିଲେ । ଦାନବରୁଧିରମାଂସାଦିରେ ଅପ୍ଲୁତ ନରସିଂହଦେବଙ୍କୁ ଅଭିଷେକ କରିବା ସକାଶେ ନଦୀ, ବନ, ସମୁଦ୍ର ପ୍ରଭୃତି ପୁଣ୍ୟତୀର୍ଥମାନେ

ଆକାର ଧାରଣ କରି ଉପସ୍ଥିତ ହେଲେ । ନରସିଂହ ଦେବ ଭୟଂକର ଦେଖାଯାଉଥିଲେ । ବ୍ରହ୍ମାଙ୍କର ଅନୁରୋଧରେ ପ୍ରହ୍ଲାଦ ନତଜାନୁ ହୋଇ ମସ୍ତକ ନତ କରି ନରସିଂହ ଦେବଙ୍କର କୋପ ଶାନ୍ତ କରିବା ଉଦ୍ଦେଶ୍ୟରେ ସ୍ତୁତି କଲେ । ପ୍ରହ୍ଲାଦ କହିଲେ—"ଲୀଳାମୟ ସମସ୍ତ ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ଲୟର କର୍ତ୍ତା ଅଦ୍ଭୁତାକାର ନରସିଂହଙ୍କର ଜୟ । ଭକ୍ତ ରକ୍ଷଣ-ଦୃଢ଼ବ୍ରତ, ସକଳବର୍ଣ୍ଣାଶ୍ରମଧର୍ମାତ୍ମକ ପରମେଶ୍ୱରଙ୍କର ଜୟ । ମତ୍ସ୍ୟ, ହୟଗ୍ରୀବ, କଚ୍ଛପ, ବରାହାଦି ବିବିଧ ଅବତାରଧାରୀ; ଦୁର୍ବହ ଭୂଭାରବହନକର୍ତ୍ତା ନରସିଂହଙ୍କର ଜୟ । ଦୈତ୍ୟକୁଳଧୂମକେତୁ ସମସ୍ତ ଦେବର୍ଷି ପରିରକ୍ଷକ, ଆଶ୍ରିତବତ୍ସଳ, ଅଦ୍ଭୁତ ବିଗ୍ରହଧାରୀ, ଯୋଗୀନ୍ଦ୍ର ସ୍ତୁତ ପାଦ, ସତ୍ପୁଣ୍ୟଚରିତ ଆପଣଙ୍କର ଜୟ । ଆଶ୍ରିତବତ୍ସଳ ଆପଣ ମୋର ଡାକରେ ସ୍ତମ୍ଭରୁ ଆବିର୍ଭୂତ ହୋଇ ଦୈତ୍ୟରାଜକୁ ସଂହାର କରିଅଛନ୍ତି, ଆପଣଙ୍କର ଜୟ । ଆପଣଙ୍କର କଳ୍ପାନ୍ତ-କାଳୀନ ମେଘ ଗର୍ଜନ ପରି ଭୟଂକର ସିଂହନାଦରେ ଦୈତ୍ୟାଙ୍ଗନାମାନଙ୍କର ଗର୍ଭପାତ ହେଉଅଛି । ପ୍ରଳୟକାଳୀନ ପ୍ରବଳବାୟୁ ସଦୃଶ ବେଗରେ ନିର୍ଗତ ନିଶ୍ୱାସମାନଂକରେ ତାପରେ ଦୈତ୍ୟ ସମୁଦାୟ ପାଦେ ମାତ୍ର ଚଳିପାରୁ ନାହାନ୍ତି ଆପଣଙ୍କର ଚକ୍ରାୟୁଧରେ ବିଦୀର୍ଣ୍ଣ ଦୈତ୍ୟରାଜଙ୍କର ଦେହରୁ ବିନିର୍ଗତ ରକ୍ତଛଟାରେ ସମସ୍ତ ପାର୍ଶ୍ୱଦେଶ ରଞ୍ଜିତ ହୋଇଅଛି, କୋଟି କୋଟି ଚନ୍ଦ୍ରଙ୍କ ପରି କାନ୍ତି ବିଶିଷ୍ଟ ନଖ ପଂକ୍ତିରେ ରକ୍ଷେଶ୍ୱର ହିରଣ୍ୟକଶିପୁଂକର ମେରୁ ପର୍ବତ ପରି ବିସ୍ତୀର୍ଣ୍ଣ ବକ୍ଷସ୍ଥଳ ବିଦୀର୍ଣ୍ଣ ହୋଇଅଛି । ଆକାଶସ୍ଥ ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର-ମାନଂକର କାନ୍ତିପରି କାନ୍ତି ବିଶିଷ୍ଟ ବିଦୁଃକ୍ଷେପରି ଜାଜ୍ୱଲ୍ୟମାନ କେଶର-ସମୂହ ଆପଣଂକର ଶୋଭା ବର୍ଦ୍ଧନ କରୁଅଛନ୍ତି ଆପଣଂକର ପାଦପଦ୍ମ ନଖ-ମାନଙ୍କର ଆହତ ସର୍ପରାଜ ଶେଷଦେବଙ୍କର ମୁଖରୁ ବିନିର୍ଗତ ରକ୍ତରେ ରଞ୍ଜିତ ହେଉଅଛି । ସୂର୍ଯ୍ୟଚନ୍ଦ୍ର ଆଦିଂକର ଜନ୍ମସ୍ଥାନ ନେତ୍ରଦ୍ୱୟର କାନ୍ତିରେ ତ୍ରିଭୁବନର ଘନ ଅନ୍ଧକାର ଦୂର ହେଉଅଛି । ଆପଣଂକର ତେଜୋମୟ, ଦିବ୍ୟଗୁଣ ପ୍ରକାଶକ ନାମମାନ ଭୂତ, ବେତାଳ, କୁଷ୍ମାଣ୍ଡାଦି ଦୁଷ୍ଟ ଶକ୍ତିମାନଙ୍କୁ ଧ୍ୱସ୍ତବିଧ୍ୱସ୍ତ କରୁଅଛି । ଆପଣଂକର ଜ୍ଞାନ, ବଳବୀର୍ଯ୍ୟ, ଶକ୍ତ୍ୟାଦି ଅନନ୍ତ କଲ୍ୟାଣ ଗୁଣମାନେ ଜୀବମାନଙ୍କୁ ପୁଣି ଜୀବନ୍ତ କରୁଅଛନ୍ତି । ଆପଣଂକର ଅଦ୍ଭୁତ, ଦୋଷ ରହିତ ଆକାରକୁ ସନକାଦି, ସପ୍ତର୍ଷିମାନେ ହୃଦୟ ପଦ୍ମରେ ଧ୍ୟାନ କରି ଚରିତାର୍ଥ ହେଉଅଛନ୍ତି । ଧର୍ମ, ଅର୍ଥ, କାମ ମୋକ୍ଷରୂପ ଚତୁର୍ବିଧ ପୁରୁଷାର୍ଥଭିଳାଷୀ ସତ୍ପୁରୁଷମାନେ ଆପଣଙ୍କ ଶ୍ରୀଚରଣ ଯୁଗଳକୁ ଆଶ୍ରୟ କରୁଅଛନ୍ତି । ଆପଣଂକର ଶ୍ରୀଚରଣ ତଳେ ବ୍ରହ୍ମା,

ଶିବ, ଶୁକ୍ର, କୁବେର, ଅଗ୍ନି, ବରୁଣ, ବାୟୁ ପ୍ରଭୃତି ଦେବତାମାନେ ପ୍ରଣାମ କରୁ ଅଛନ୍ତି । ଦେବରୂପୀ, ଶାନ୍ତରୂପୀ ଓ ଲକ୍ଷ୍ମୀନରସିଂହ ରୂପ ଆପଣଙ୍କୁ କୋଟି କୋଟି ନମସ୍କାର ।"

ଜୈମିନି—ପ୍ରହ୍ଲାଦଙ୍କ ଏହି ସ୍ତୁତିଶୁଣି ଭଗବାନ ନରହରି କରୁଣାସାଗର କଟାକ୍ଷରେ ସ୍ମିତଆଡେ ଦେଖି ଭକ୍ତ ପ୍ରହ୍ଲାଦଙ୍କ ଉପରେ ଅମିତ ବାତ୍ସଲ୍ୟ ପ୍ରକାଶ କରି ଲକ୍ଷ୍ମୀଙ୍କସହ ପରାମର୍ଶକରି ଦେବତାମାନଙ୍କୁ ପ୍ରହ୍ଲାଦଙ୍କର ଅଭିଷେକ କରିବା ସକାଶେ ଆଦେଶ ଦେଲେ । ବ୍ରହ୍ମାଙ୍କ ସମେତ ସମସ୍ତ ଦେବତାମାନେ ଆନନ୍ଦ-ସହକାରେ ସେହି ଆଦେଶ ଶିରୋଧାର୍ଯ୍ୟ କରି ହିରଣ୍ୟକଶିପୁଙ୍କ ପୁତ୍ର ପ୍ରହ୍ଲାଦଙ୍କୁ ରାକ୍ଷସ ରାଜ୍ୟରେ ଅଭିଷିକ୍ତକଲେ । ପ୍ରହ୍ଲାଦ ଦେବତାମାନଙ୍କ ଦ୍ୱାରା ପିତୃରାଜ୍ୟରେ ଅଭିଷିକ୍ତ ହେଲାପରେ ନିଜେ ନରସିଂହ ତୀର୍ଥରେ ଅଭିଷିକ୍ତ ହୋଇ ପ୍ରଶାନ୍ତରୂପ ଧାରଣ କଲେ । ଦ୍ୱିଜଗଣ,କୃତଶୌଚ, ପାପହାରି, ଅହୋବଳ, ସିଂହାଚଳ ଏହି ତୀର୍ଥମାନଙ୍କରେ ନରସିଂହଦେବ ପ୍ରତ୍ୟେକରେ ଭିନ୍ନଭିନ୍ନ ରୂପ ଧାରଣକରି ବିଜେ ହୋଇ ଅଛନ୍ତି । ପ୍ରହ୍ଲାଦ ଅଭିଷେକକାରୀ ଦେବତାମାନଙ୍କୁ ଭକ୍ତିଭରେ ପୂଜା କଲେ । ଭୋଗ ପିପାସା ସହିତ ପ୍ରହ୍ଲାଦ ପିତା ବଳାତ୍କାରରେ ଅପହରଣ କରି ଆଣିଥିବା ଦେବତାମାନଙ୍କର ସକଳ ସମ୍ପତ୍ତି ଦେବତାମାନଙ୍କୁ ସମର୍ପଣ କଲେ ପିତା ବନ୍ଦୀ କରିଥିବା ଅନ୍ୟାନ୍ୟ ଦେବତାମାନଙ୍କୁ ମୁକ୍ତ କରିଦେଲେ । ସେମାନେ ମୁକ୍ତ ପାଇ ନିଜ ନିଜ ଧାମକୁ ପ୍ରତ୍ୟାବର୍ତ୍ତନ କଲେ । ଦେବତାମାନେ ସ୍ୱର୍ଗକୁ ଅଗ୍ରେହଣ କଲାପରେ ନରସିଂହସ୍ୱାମୀ ଅନ୍ତର୍ହିତ ହେଲେ । ପ୍ରହ୍ଲାଦ ନିଷ୍କଣ୍ଟକ ରାଜ୍ୟ ପରିପାଳନ କରିବାକୁ ଲାଗିଲେ । ପିତାଙ୍କ ଆଦେଶରେ ପ୍ରହ୍ଲାଦଙ୍କୁ ନାନା-ପ୍ରକାର ବାଧା ଦେଇଥିବା ଦୈତ୍ୟମାନେ ମଧ୍ୟ ପ୍ରହ୍ଲାଦଙ୍କର ସୁଶାସନରେ ପରମ ତୃପ୍ତି ଲାଭ କଲେ । ପ୍ରଖର ଗ୍ରୀଷ୍ମତାପରେ ସନ୍ତପ୍ତ ଔଷଧିମାନେ ଚନ୍ଦ୍ରଙ୍କର ବିମଳ କିରଣରେ ଆପ୍ୟାୟିତ ହେଲାପରି ହିରଣ୍ୟ କଶିପୁଙ୍କ ଦ୍ୱାରା ପ୍ରପୀଡ଼ିତ ତ୍ରିଲୋକବାସୀ ପ୍ରଜାମାନେ ପ୍ରହ୍ଲାଦଙ୍କର ସୁଶାସନରେ ପରମ ଉଲ୍ଲାସରେ କାଳ ଯାପନ କଲେ । ଦୈତ୍ୟ ଓ ଦାନବମାନେ ଉଗ୍ର ସ୍ୱଭାବ ପରିହାର କରି ପ୍ରଶାନ୍ତ ରୂପ ଧାରଣ କଲେ । ସର୍ବାଙ୍ଗ ସୁନ୍ଦରୀ ଗରୁଡ଼, ଉରଗ, ଗନ୍ଧର୍ବକନ୍ୟାମାନେ ନିଜ ନିଜ ପିତାମାତାଙ୍କର ଆଦେଶ ନେଇ ଶାସ୍ତ୍ରାନୁସାରେ ପ୍ରହ୍ଲାଦଙ୍କୁ ବିବାହ କଲେ । ସେମାନଙ୍କ ଗର୍ଭରୁ ଶୀଳ ସୁଗୁଣ ସମ୍ପନ୍ନ ପୁତ୍ରମାନେ ଜାତ ହେଲେ । ପ୍ରହ୍ଲାଦଙ୍କର ପଟ୍ଟମହିଷୀ ଦୈତ୍ୟ କନ୍ୟାଙ୍କ ଗର୍ଭରୁ ଦୈତ୍ୟକୁଳବର୍ଦ୍ଧନ ହିରଣ୍ୟକଶିପୁଙ୍କ

ସମବଳ ପରାକ୍ରମ ବିରୋଚନ ନାମକ ଏକ ପୁତ୍ର ଜାତ ହେଲେ । ଋଷି, ବ୍ରାହ୍ମଣ, ରାଜା, ତପସ୍ୱୀ ପ୍ରଭୃତି ପୂର୍ବ ପରି ନିଜ ନିଜ କର୍ମ କରି ପରମ ସନ୍ତୋଷରେ ରହିଲେ । କୌଣସି ବାଧାବିଘ୍ନ ନ ଥାଇବା ପୃଥିବୀରେ ଯାଗାଦି କର୍ମମାନ ଅନୁଷ୍ଠିତ ହେଲା । ଦେବତାମାନେ ନିଜ ନିଜ ଯଜ୍ଞଭାଗ କ୍ରମାନୁଯାୟୀ ଭୋଗ କଲେ । ପ୍ରଜାମାନେ ଈତିବାଧା (ଅତିବୃଷ୍ଟି, ଅନାବୃଷ୍ଟି, ଶଲଭ, ମୂଷିକ ଓ ଖଗ) ବିରହିତ ହୋଇ ପରମ ସୌଖ୍ୟରେ କାଳ ଯାପନ କଲେ । ପ୍ରହ୍ଲାଦ ନିଜେ ଯଜ୍ଞେଶ୍ୱର ଶ୍ରୀ ହରିଙ୍କର ଶତ ଶତ ଯାଗ କଲେ । ଯାଜକ, ଯାଚକ ଓ ବିଦ୍ୟାର୍ଥିକ ମାନଙ୍କୁ ଉପଯୁକ୍ତ ଦକ୍ଷିଣା ଦେଲେ । ପ୍ରହ୍ଲାଦଙ୍କର ସୁଶାସନରେ ପ୍ରଜାମାନେ ସକଳ ପ୍ରକାର ଉପଦ୍ରବରହିତ ହୋଇ ଅମୃତାଦି ପରିହାର କରି ପରମ ଆନନ୍ଦ ଅନୁଭବ କରି କାଳଯାପନ କଲେ ।

ଇତିଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ଶ୍ରୀ ସିଂହାଚଳ କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନଂ ନାମ ତ୍ରୟୋବିଂଶୋଽଧ୍ୟାୟଃ । ୨୩ ।

—୦—

## ଚତୁର୍ବିଂଶ ଅଧ୍ୟାୟ

ଜୈମିନି—ଦ୍ୱିଜଗଣ ! ପ୍ରହ୍ଲାଦ ଧର୍ମରେ ପୃଥିବୀ ପାଳନ କରି କେତେ-କାଳ ଅତିବାହିତ କଲା ପରେ ସିଂହାଚଳସ୍ଥ ନରସିଂହସ୍ୱାମୀଙ୍କୁ ମନେମନେ ଧ୍ୟାନ କଲେ । ନିଜର ପୁତ୍ର ଗୁଣଗରିଷ୍ଠ ବିରୋଚନଙ୍କୁ ରାଜ୍ୟରେ ଅଭିଷିକ୍ତ କରି ବ୍ରାହ୍ମଣ, ପୁରୋହିତ, ଅମାତ୍ୟ, ପରିବାରବର୍ଗ ଓ ବିପୁଳ ଧନ ଦକ୍ଷିଣା, ଯଜ୍ଞୋପକରଣ ପ୍ରଭୃତି ସାମଗ୍ରୀ ଧରି ଲକ୍ଷଲକ୍ଷ ପ୍ରୟାଣରେ ନାନା ଦେଶ ଅତିକ୍ରମ କରି ଦ୍ୱିତୀୟ ହିମାଳୟ ସିଂହାଚଳରେ ଉପସ୍ଥିତ ହେଲେ । ପରମ ଆହ୍ଲାଦରେ ଅବିଶ୍ରାନ୍ତ ପ୍ରବାହମାନ ଧାରାମାନଙ୍କର ଜଳକଣାରେ ଭରପୂର ମଳୟମାରୁତର ସଂସ୍ପର୍ଶରେ ଆପ୍ୟାୟିତ ହୋଇ ପର୍ବତ ଆରୋହଣ କଲେ । ପର୍ବତ ଉପରେ ଉପସ୍ଥିତ ହୋଇ ପରମତୃପ୍ତି ଲାଭ କରି ସ୍ୱଚ୍ଛସଲିଳ ପଶ୍ଚିମାଭି-ମୁଖେ ପ୍ରବାହିତ ଗଙ୍ଗାଧାରାରେ ବ୍ରାହ୍ମଣମାନଙ୍କ ସହିତ ସ୍ନାନ କରି ତର୍ପଣାଦି ନିତ୍ୟକର୍ମ ଶେଷ କରି ବ୍ରାହ୍ମଣମାନଙ୍କୁ ନାନାପ୍ରକାର ଦାନ ଦେଲେ । ପ୍ରହ୍ଲାଦ

ନୃସିଂହଙ୍କ ଠାରେ ମନ ଓ ପ୍ରାଣ ଅର୍ପଣ କରି, ନରସିଂହଦେବଙ୍କର ସେବା କରିବା ଇଚ୍ଛାରେ ବଶବର୍ତ୍ତୀ ହୋଇ ଆଶ୍ରମୀମାନଙ୍କ ସହିତ ପର୍ବତ ଶିଖରର ନାନାପ୍ରକାର ଗୁହା ପ୍ରଭୃତି ନିଭୃତ ସ୍ଥାନମାନ ଖୋଜିବାକୁ ଆରମ୍ଭ କଲେ। ଏକ ପରମରମଣୀୟ ପ୍ରଦେଶରେ ମାଳତୀଲତା ବେଷ୍ଟିତ ପାରିଜାତ ବୃକ୍ଷମୂଳରେ ନରସିଂହଦେବଙ୍କୁ ଦର୍ଶନ କଲେ। ପ୍ରହ୍ଲାଦ ନରସିଂହ ସ୍ୱାମୀଙ୍କୁ ଦେଖି ଆନନ୍ଦ-ବାଷ୍ପପୂର୍ଣ୍ଣ ନେତ୍ରରେ ସାଷ୍ଟାଙ୍ଗ ପ୍ରଣାମ କରି, ଦେବ ଋଷି, ସିଦ୍ଧ, ଗନ୍ଧର୍ବାଦିଙ୍କ ଦ୍ୱାରା ପୂଜ୍ୟମାନ ନରସିଂହଦେବଙ୍କୁ, ସର୍ବତୋଭାବେ ସେବା କରି, ଆନନ୍ଦରେ ଗଦ୍‌ଗଦକଣ୍ଠ ହୋଇ, "ନମୋ ନୃସିଂହାୟ" କହି ହାତ ଯୋଡ଼ି ବାରମ୍ବାର ପ୍ରଦକ୍ଷିଣ କଲେ। ନରସିଂହଦେବଙ୍କର ସେବା କରି ଦୈତ୍ୟଶ୍ରେଷ୍ଠ ପ୍ରହ୍ଲାଦ, ନିଜେ ସେ ସ୍ଥାନ ସମ୍ମାର୍ଜନ କଲେ। ତାଙ୍କର ପରିବାରବର୍ଗ ସେ ସ୍ଥଳରେ ଜଳ ଛିଞ୍ଚିଲେ। ନରସିଂହ ଦେବଙ୍କର ଚତୁଃପାର୍ଶ୍ୱରେ ପଞ୍ଚବସ୍ତ୍ରର ବାଡ ବାନ୍ଧିଲେ। ଉପରେ ବିଶାଳ ଚନ୍ଦ୍ରାତପ ବାନ୍ଧିଲେ। ସୁବର୍ଣ୍ଣ କଳସରେ ତୀର୍ଥଜଳରେ ସ୍ୱାମୀଙ୍କର ଅଭିଷେକ କରି ଗନ୍ଧପୁଷ୍ପ ବସ୍ତ୍ରାଦିରେ ପ୍ରହ୍ଲାଦ ନରସିଂହସ୍ୱାମୀଙ୍କର ଅର୍ଚ୍ଚନ କଲେ। ଦୈତ୍ୟରାଜ ପ୍ରହ୍ଲାଦ ଏପରି ସାଧାରଣ ଭାବେ ପୂଜା କରି ଶିଳ୍ପକର୍ମୀଙ୍କ ଦ୍ୱାରା ରମଣୀୟ ବିମାନ ନିର୍ମାଣ କରାଇ ଶାସ୍ତ୍ରୋକ୍ତ ବିଧିମତେ ନୈଋତି ଦିଗରେ ମୂର୍ତ୍ତି ପ୍ରତିଷ୍ଠା କଲେ। ପର୍ବତ ଉପରେ ବ୍ରାହ୍ମଣାଦି ଚତୁର୍ବିଧ ବର୍ଣ୍ଣମାନଙ୍କର ନିବାସ ଯୋଗ୍ୟ ଏକ ନଗର ସ୍ଥାପନ କଲେ। ଦ୍ୱିଜଗଣ, ପ୍ରହ୍ଲାଦ ଆଶ୍ରମୀଙ୍କର ଆଦେଶ ନେଇ ବିଧିମତେ ଭକ୍ତି ସହକାରେ ନରସିଂହସ୍ୱାମୀଙ୍କୁ ପ୍ରତିଦିନ ପୂଜା କରିବାକୁ ଲାଗିଲେ। ପ୍ରଭାତ ସମୟରେ ଶଯ୍ୟା ତ୍ୟାଗ କରି ନରସିଂହଦେବଙ୍କୁ ସ୍ମରଣ କରି ନିତ୍ୟକର୍ମାଦି ସମାପନ କରି ଗଙ୍ଗାଧାରାରେ ସ୍ନାନ କରି ନରସିଂହ ଦେବଙ୍କ ମନ୍ଦିରରେ ପ୍ରବେଶ କରି ଗୀତ ବାଦ୍ୟାଦି ଓ ମଙ୍ଗଳ ସୂକ୍ତ ପାଠ-ପ୍ରଭୃତିରେ ନରସିଂହ ଦେବଙ୍କ ପ୍ରବୋଧନ କରି, ସାଷ୍ଟାଙ୍ଗ ପ୍ରଣିପାତ କରି ମୌନରେ ନିର୍ମାଲ୍ୟ ବିସର୍ଜନ କରି, ସମସ୍ତ ଗର୍ଭମନ୍ଦିର ନିଜେ ସମ୍ମାର୍ଜନ କରି ସ୍ୱାମୀଙ୍କର ସମ୍ମୁଖରେ ସଂପ୍ରୋକ୍ଷଣ କରି ଆସନ ଉପରେ ଉପବିଷ୍ଟ ହୋଇ ଭୂତ-ଶୁଦ୍ଧି, ପ୍ରାଣାୟାମାଦି ପୂର୍ବକ ମନ୍ତ୍ରନ୍ୟାସ କରି ନୃସିଂହ ଅନୁଷ୍ଟୁଭ୍ ମନ୍ତ୍ର ଅଷ୍ଟୋ-ତ୍ତରଶତ ଜପ କରି, ବାମଭାଗରେ ଦାହନ, ପ୍ଲାବନ, ଅଗ୍ନ୍ୟୁତ୍ପାଦନ କ୍ରମରେ ଅର୍ଘ୍ୟାଦି ପାତ୍ର ସ୍ଥାପନ କରି, କୁମ୍ଭୋଦକରେ ଶାସ୍ତ୍ର ବିହିତ ଔଷଧିମାନଙ୍କଦ୍ୱାରା ମନ୍ତ୍ରଜଳ ଅଭିମନ୍ତ୍ରିତ କରି, ନିର୍ମଳ ଅର୍ଘ୍ୟପାତ୍ରର ଜଳରେ ନିଜକୁ ଓ ପୂଜା ସାମଗ୍ରୀ ଓ ପୂଜାସ୍ଥଳ ପ୍ରୋକ୍ଷଣ କରି ପ୍ରହ୍ଲାଦ ଏକାଗ୍ରହୃଦୟରେ ଭଗବାନଙ୍କୁ

ଜାତକୁସୁମ ଅର୍ଘ୍ୟ-ପାଦ୍ୟାଦି ବିଧିରେ ପୂଜାକରି କ୍ରମେ କ୍ରମେ ଆଧାର ପୀଠରେ ପଦ୍ମକର୍ଣିକା ପର୍ଯ୍ୟନ୍ତ ମନ୍ତ୍ରୋଚ୍ଚାରଣ ପୂର୍ବକ ଦ୍ୱିଷ୍ଟଦାଗ ପୀଠପୂଜା କରି ମନ୍ତ୍ରମୟ ପୀଠ ଉପରେ ପୁଷ୍ପାଞ୍ଜଳି ପ୍ରକ୍ଷେପ ପୂର୍ବକ ପ୍ରଶାନ୍ତମୂର୍ତ୍ତି ନରସିଂହସ୍ୱାମୀଙ୍କୁ ଆବାହନ କରି, ଆଠପ୍ରକାର ମୁଦ୍ରା ପ୍ରଦର୍ଶନ କରି, ପାଦ୍ୟ, ଅର୍ଘ୍ୟ ଆଚମନ ସମର୍ପଣ କରି, ସ୍ନାନ ସକାଶେ ପୀଠ ଉପରେ ବସାଇ ସର୍ବାଙ୍ଗରେ ତୈଳ ମର୍ଦ୍ଦନ କରାଇ ଶରିଚୂର୍ଣ୍ଣ ଉଦ୍ୱର୍ତ୍ତନକରି ସୁବାସିତ ତୀର୍ଥଜଳରେ ସ୍ନାନ କରାଇ, ପୁରୁଷସୂକ୍ତ ମନ୍ତ୍ରରେ ଷୋଡଶ କଳସରେ ଅଭିଷେକ କରାଇ, ବେଦଉଚ୍ଚାରଣ-ପୂର୍ବକ ଶୁଦ୍ଧୋଦକରେ ସହସ୍ରଧାରାଭିଷେକ କରି, ମାର୍ଜନ କରି, ସୂକ୍ଷ୍ମ ବସ୍ତ୍ରରେ ସମସ୍ତ ଅଙ୍ଗ ପୋଛି, ବିଚିତ୍ର ପଟ୍ଟବସ୍ତ୍ର ପରିଧାନ କରାଇ, କର୍ପୂରାଦି ସୁବାସିତ ଚନ୍ଦନ ଲେପନ କରି ସୁବାସଂପରିପୂରିତ ଚମ୍ପକ, ଅଶୋକ, ପୁନ୍ନାଗ, ମଲ୍ଲିକା, ବକୁଳାଦି ପୁଷ୍ପରେ ଗ୍ରଥିତ ମାଲ୍ୟରେ ଶିର ଓ କଣ୍ଠଦେଶ ଅଳଂକୃତ କରି, ଦିବ୍ୟ ଭୂଷା କରି ଦିବ୍ୟ ଜ୍ୟୋତି ବିଶିଷ୍ଟ ଆଭରଣମାନ ସମର୍ପଣ କଲେ । ମଣିନିର୍ମିତ ମଧ୍ୟାହ୍ନ ସୂର୍ଯ୍ୟପରି ଜାଜ୍ୱଲ୍ୟମାନ କିରୀଟ, ସମୁଜ୍ଜ୍ୱଳ ଚୂଡ଼ାମଣି ମସ୍ତକରେ ଅର୍ପଣ କଲେ । କର୍ଣ୍ଣରେ ଗାରୁଡ଼ ମାଣିକ୍ୟ ଖଚିତ କୁଣ୍ଡଳ, କଣ୍ଠରେ ନବରତ୍ନ ନିର୍ମିତ ହାର, ସ୍କନ୍ଧରେ ନାନାରତ୍ନ ସମୁଦ୍ଭାସିତ କେୟୁର, ଭୁଜରେ ରତ୍ନାଙ୍ଗଦ ଓ ହସ୍ତରେ କଙ୍କଣ ସନ୍ନିବେଶିତ କଲେ । ଚନ୍ଦ୍ର ସଦୃଶ ଶଙ୍ଖ ବାମ-ହସ୍ତରେ, ସୂର୍ଯ୍ୟ ସଦୃଶ୍ୟ ଚକ୍ର ଦକ୍ଷିଣ ହସ୍ତରେ, କଟିସୂତ୍ର କଟିପ୍ରଦେଶରେ ଓ ନୂପୁର ପାଦଦେଶରେ ଲଗାଇଲେ । ଦୈତ୍ୟରାଜ ପ୍ରହ୍ଲାଦ ନାନାବିଧ ଅଳଙ୍କାରରେ ସ୍ୱାମୀଙ୍କୁ ଅଳଂକୃତ କରି ଅମିତ ଆନନ୍ଦ ଅନୁଭବ କଲେ । ଦଶାଙ୍ଗ ଚନ୍ଦନାଦି ଚୂର୍ଣ୍ଣ ଧୂପ ଏବଂ କର୍ପୂର, ଆଜ୍ୟାଦି ସମ୍ବଳିତ ଦୀପ ପ୍ରଦାନ କରି, ଛତ୍ର ଚାମର ଓ ବ୍ୟଜନ ପ୍ରଭୃତି ସମର୍ପଣ କରି, ଅଷ୍ଟମଙ୍ଗଳ ଗାନରେ ଦର୍ପଣ ପ୍ରଦର୍ଶନ କରି, ଚରଣ କମଳରେ ପୁଷ୍ପାଞ୍ଜଳି ସମର୍ପଣ କଲେ । ପରେ ଚଣ୍ଡାଦି ଦ୍ୱାରପାଳକ, କୁମୁଦାଦି ପାରିଷଦଗଣ, ଏବଂ ସମ୍ମୁଖସ୍ଥ ଗରୁଡଙ୍କୁ ପୂଜା କରି ପରମ ତୃପ୍ତି ଲାଭ କଲେ । ନରସିଂହ ସ୍ୱାମୀଙ୍କର ପୂଜାସମୟରେ ମୃଦଙ୍ଗ, ଭେରୀ, ପଟହ ମୁରଜାଦି ନାନାବିଧ ବାଦ୍ୟ ସେବକମାନେ ବଜାଉଥିଲେ । ତୂରୀ କାହାଳୀ ଓ ଶଙ୍ଖମାନ ମଧ୍ୟ ଫୁଙ୍କୁଥିଲେ । ବେଣୁନାଦ ସହିତ ତାଳ ଧୀରେ ୨ ବଜାଉଥିଲେ । ଗାୟକମାନେ ଶ୍ରୋତ୍ର ମନୋହର ବୀଣାନାଦ ସହ ଲୟ ରଖି ଗାନ କରୁଥିଲେ । ନଟନର୍ତ୍ତକ ପ୍ରଭୃତି ନେତ୍ରାଦି ଇଙ୍ଗିତରେ ହାବଭାବ ପ୍ରକାଶ କରି ନୃତ୍ୟ କରୁଥିଲେ । ଏପରି ସୁମଧୁର ନୃତ୍ୟ ନାଟ୍ୟରେ ଦେବାଳୟ ମୁଖରିତ

ହେଉଥିଲା । ବାଗଙ୍ଗନା ଚ୍ଛମର, ବ୍ୟଜନ ଓ କରଦୀପିକା (ଦୁହୁଡ଼ୀ)ଧରି ସ୍ୱାମୀଙ୍କର ସେବା କରୁଥିଲେ । ଏହିପରି ଦ୍ୱାବିଂଶ ଉପଚାର ସ୍ୱାମୀଙ୍କୁ ସମର୍ପଣ କଲେ । ପ୍ରହ୍ଲାଦଙ୍କର ଆଦେଶରେ ପ୍ରତିଦିନ ସେବକବର୍ଗ ଶ୍ରଦ୍ଧା ଭକ୍ତି ସହକାରେ ପୂର୍ବ-ପର ପୂଜା କରିବାକୁ ଲାଗିଲେ । ପରିଶେଷରେ ପ୍ରହ୍ଲାଦ ଭୋଜନ ସକାଶେ ଆସନ ଦେଇ ପ୍ରଥମେ ମଧୁପର୍କ ସମର୍ପଣ କରି, ଆଚମନ ଦେଇ, ଚତୁର୍ବିଧ ଅନ୍ନପାନ, ଘୃତପକ୍ୱ ବ୍ୟଞ୍ଜନ, କର୍ପୂରବଦ୍ଧ ଅଧିବାସିତ ନାନାବିଧ ଅପୂପାଦି, ସରସ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ପାନୀୟାଦି, କଦଳୀ ପଣସ ପ୍ରଭୃତି ଫଳ, କର୍ପୂରଗନ୍ଧ ସୁବାସିତ ଶୀତଳ ପାନକ ପ୍ରଭୃତି ବିଶୁଦ୍ଧବସ୍ତୁମାନ ଶ୍ରଦ୍ଧା ଭକ୍ତିସହକାରେ ସ୍ୱାମୀଙ୍କୁ ସମର୍ପଣ କଲେ । ଏଳାଦିଯୁକ୍ତ ତାମ୍ବୁଳ ନୀରାଜନ ଓ ମନ୍ତ୍ରପୁଷ୍ପ ସମର୍ପଣ କରି ବିଧିବିହିତ ଷୋଡ଼ଶୋପଚାରରେ ନରସିଂହ ସ୍ୱାମୀଙ୍କର ପୂଜା କରି ପରମ ଭାଗବତ ପ୍ରହ୍ଲାଦ ଆତ୍ମସନ୍ତୋଷ ଲାଭ କଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ର-ମାହାତ୍ମ୍ୟ ବର୍ଣ୍ଣନଂ ନାମ ଚତୁର୍ବିଂଶୋଽଧ୍ୟାୟଃ ।୨୪।

## ପଞ୍ଚବିଂଶ ଅଧ୍ୟାୟ

ଜୈମିନି—ତା ପରେ ପ୍ରହ୍ଲାଦ ପ୍ରଦକ୍ଷିଣ ନମସ୍କାର କରି ହାତ ଯୋଡ଼ି ପ୍ରଭୁଙ୍କ ସମ୍ମୁଖରେ ଛିଡ଼ା ହୋଇ ସ୍ତୁତି କରିବାକୁ ଲାଗିଲେ । ସିଂହାଚଳାଧୀଶ୍ୱର ଦୈତ୍ୟ ବିଦାରଣ, ଦୈତ୍ୟକୁଳାନ୍ତକ, ସର୍ବ ଭୂତାଧିପ, ନରସିଂହଦେବ ! ତୁମ୍ଭଙ୍କୁ ମୋର ସାଷ୍ଟାଙ୍ଗ ପ୍ରଣାମ, ଦେବଦାନବାଦିଙ୍କର ସନାତନ ଦେବତା ତୁମର ପାଦ ପଦ୍ମରେ ମୁଁ ଶରଣାଗତ ହେଲି । ଆପଣ ଦେବଦାନବମାନଙ୍କର ପ୍ରଭୁ, ମୁଁ କପଟ ଇନ୍ଦ୍ରିୟମାନଙ୍କ ବାଧାରେ ପରିପୀଡ଼ିତ, ଚଞ୍ଚଳମତି । ଆପଣଙ୍କ ପୂଜା କରିବାକୁ କିପରି ସମର୍ଥ ହେବି ? ଆପଣ ସର୍ବଦା ମୋତେ ନିର୍ମଳ ମନୋବୃତ୍ତି ପ୍ରଦାନ କରନ୍ତୁ । ବିଷମ ବିଷୟାନ୍ତର ବ୍ୟାପୃତ ମୋର ମନ ସବୁବେଳେ ଆପଣଙ୍କଠାରେ ରହିଲାପରି ଅନୁଗ୍ରହ କରନ୍ତୁ । ଦୁଷ୍ଟମତି ମୋର ପୁତ୍ର, ପୌତ୍ର, କଳତ୍ରାଦିଙ୍କଠାରେ ଯେପରି ମମତା ଜାତ ହେଉଅଛି ଆପଣଙ୍କର ଭକ୍ତମାନଙ୍କଠାରେ ମଧ୍ୟ ସେହିପରି ମମତା ଜାତହେଉ । ଷାଡ଼ଗୁଣ୍ୟ-ମୟୂବିଗ୍ରହ ! ସଂସାର ସାଗରରେ ନିମଗ୍ନ ହୋଇ ମାର୍ଗ ଭ୍ରଷ୍ଟ ଲୋକମାନଙ୍କପକ୍ଷେ ଆପଣଙ୍କ ପାଦପଦ୍ମ ପରମସାଧନ । ସେହି ପାଦପଦ୍ମ ପରିହାର କଲେ ଯୋଗୀ-ମାନେ ମଧ୍ୟ ଗନ୍ତବ୍ୟ ପଥରୁ ଭ୍ରଷ୍ଟ ହୋଇ ଅଧୋଗତି ଲାଭ କରନ୍ତି । ମୁଁ

ଜାଗ୍ରତ-ସ୍ୱପ୍ନ-ସୁଷୁପ୍ତି ଅବସ୍ଥାରେ ଯେଉଁ ସବୁ ସୁକୃତ ବା ଦୁଷ୍କୃତ କର୍ମମାନ କରିଅଛି, ସେ ସମସ୍ତ ଆପଣଙ୍କୁ ସମର୍ପଣ କରୁଅଛି । ଯାହା ସବୁ କରୁଅଛି, ସେ ସମସ୍ତ ଆପଣଙ୍କ ସକାଶେ ବିନା ମୋ ସକାଶେ ନୁହେଁ । ଆପଣଙ୍କର ଆଜ୍ଞାପିତ କର୍ମକୁ ମୁଁ କରି କରି ଆପଣଙ୍କୁ ଅର୍ପଣ କରୁଅଛି । ଆପଣଙ୍କ ପୂଜାରେ ମୋର ଯେଉଁ ସବୁ ନ୍ୟୂନାଧିକ ଭାବ ରହିଯାଉଅଛି, ସେ ସମସ୍ତ ଆପଣ କ୍ଷମା କରନ୍ତୁ । ନରସିଂହ ଦେବ, ନମସ୍କାର । ରାକ୍ଷସ ବଂଶରେ ଜନ୍ମ ମୋତେ ରକ୍ଷା କରିବାକୁ ଆପଣ ବୈକୁଣ୍ଠପୁର ତ୍ୟାଗ କରି ଗରୁଡ଼ାରୂଢ଼ ହୋଇ ମୋ ପାଖକୁ ଆସିଥିଲେ । ଆପଣଙ୍କର ପ୍ରସନ୍ନମାନଙ୍କ ରକ୍ଷା ଅନବରତମାୟ । ମୋର ରକ୍ଷା ସକାଶେ ସିଂହାଚଳରେ ଆବିର୍ଭୂତ ଆପଣଙ୍କର କଳ୍ପକଳ୍ପାନ୍ତ ସବୁବେଳେ ମଙ୍ଗଳହେଉ-ଥାଉ, ସିଂହାଚଳନାଥ, ଆପଣଙ୍କୁ ନମସ୍କାର, ଲକ୍ଷ୍ମୀନୃସିଂହରୂପୀ ଆପଣଙ୍କୁ ନମସ୍କାର । ଶ୍ରୀ, ଭୂ, ସମେତ ଆପଣଙ୍କୁ କୋଟି କୋଟି ନମସ୍କାର । ପ୍ରହ୍ଲାଦ ଏହି ପ୍ରକାରେ ନରସିଂହଦେବଙ୍କର ସ୍ତୁତିକରି, ନମସ୍କାରକରି ଅନୁଗ୍ରହୋନ୍ମୁଖ ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରଦତ୍ତ ପ୍ରସାଦ ସେବା କରି ନିଜ ଆବାସକୁ ପ୍ରତ୍ୟାବର୍ତ୍ତନ କଲେ । ଏହିପରି ପ୍ରହ୍ଲାଦ ପ୍ରତିଦିନ ପ୍ରାତଃ, ମଧ୍ୟାହ୍ନ ଓ ସାୟଂକାଳରେ ନରସିଂହ ଦେବଙ୍କର ଆରାଧନା କରି, ତାଙ୍କଠାରେ ମନପ୍ରାଣ ଅର୍ପଣ କରି ଅନେକସମୟ ଅତିବାହିତ କଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁ ଖଣ୍ଡେ ସିଂହାଚଳ କ୍ଷେତ୍ର
ମାହାତ୍ମ୍ୟ ବର୍ଣ୍ଣନଂ ନାମ ପଞ୍ଚବିଂଶୋଽଧ୍ୟାୟଃ ।୨୫।

## ଷଡ଼ବିଂଶ ଅଧ୍ୟାୟ

ଜୈମିନି—ଦ୍ୱିଜଗଣ, ଏକ ସମୟରେ ଭୂମିରୁ ନାରଦପ୍ରଭୃତି ଦେବଗାୟକମାନେ ବିଷ୍ଣୁଙ୍କର ମତ୍ସ୍ୟାଦି ଅବତାର ଓ ଅଦ୍ଭୁତ ଚରିତ ଗାନ କରୁଥିଲାବେଳେ ବ୍ରହ୍ମା ସେ ସମସ୍ତ ଶୁଣି ପୃଥିବୀରେ ନରସିଂହଦେବଙ୍କର ଅହୋବଳାଦି କ୍ଷେତ୍ରମାନଙ୍କରେ ଭୁକ୍ତି ମୁକ୍ତିପ୍ରଦ ବିଭିନ୍ନ ରୂପମାନଙ୍କ ମଧ୍ୟରେ କେଉଁ ମୂର୍ତ୍ତି ଶାନ୍ତ ସ୍ୱରୂପ ଓ ମୁଖ୍ୟ—ଏହା ଭଗବାନଙ୍କ ମୁଖରୁ ଶୁଣିବାକୁ ଇଚ୍ଛା କରି କ୍ଷୀର ସାଗରସମୀପରେ ଉପସ୍ଥିତ ହେଲେ । କ୍ଷୀରସାଗରର ଚତୁର୍ଦ୍ଦିଗରେ ସୁବର୍ଣ୍ଣ ପ୍ରାଚୀର ଅବସ୍ଥିତ । କ୍ଷୀର ସାଗରର ଲହରିଗୁଡ଼ାକ ପବନ ଆଘାତରେ ପର୍ବତପରି ଉଠିଉଠି ଭାଙ୍ଗିଯାଉଥାନ୍ତି । ମଧ୍ୟରେ ଅତ୍ୟାଶ୍ଚର୍ଯ୍ୟାକର ଉଦ୍ୟାନବନ ଶୋଭା ପାଉଅଛି । ମଳୟ ପବନ ବହୁଅଛି । ବିକଶିତ ପୁଷ୍ପମାନଙ୍କ ଉପରେ ବସି ଭ୍ରମରପଂକ୍ତି ମଧୁରଗୁଞ୍ଜନ କରୁଅଛି ।

ଗନ୍ଧର୍ବମାନଙ୍କର ଗାନ ଚତୁର୍ଦ୍ଦିଗରେ ପ୍ରତିଧ୍ୱନିତ ହେଉଅଛି । ବ୍ରହ୍ମା ପ୍ରବେଶ କଲାମାତ୍ରେ ଉପସ୍ଥିତପ୍ରବୀଣ ମୁକ୍ତ ସଂଘର ଅଗ୍ରଗଣ୍ୟ ସନକ-ସନନ୍ଦାଦି ସପ୍ତର୍ଷିମାନେ ପ୍ରତ୍ୟୁତ୍ଥାନ କଲେ । ବ୍ରହ୍ମା ଅତି ଉନ୍ନତ ସହସ୍ର ସ୍ତମ୍ଭ ପରିବେଷ୍ଟିତ ମାଣିକ୍ୟମଣ୍ଡପରେ ଯୋଗାସନରେ ଲକ୍ଷ୍ମୀଙ୍କ ସହିତ ବିରାଜମାନ ସତ୍ୟ ଜ୍ଞାନାନନ୍ଦ ସ୍ୱରୂପ, ପ୍ରସନ୍ନମୁଖକମଳ, କିରୀଟ କୁଣ୍ଡଳାଦି ଆଭରଣରେ ଅଲଂକୃତ, ପଦ୍ମମାଳଯୁକ୍ତ ବନମାଳା ବିଭୂଷିତ, ବିଦ୍ୟୁଲ୍ଲତାପରି ଦେଦୀପ୍ୟମାନ ପୀତାମ୍ବରଧାରୀ, ଅନନ୍ତ ଚକ୍ର-ଶଙ୍ଖକୌମୋଦକୀ ନିତ୍ୟ ମୁକ୍ତମାନଙ୍କ ଦ୍ୱାରା ସୁପୂଜିତ, ଅନେକ-ସହସ୍ର କୋଟିଚନ୍ଦ୍ରଙ୍କର କାନ୍ତିରେ ସମୁଦ୍ଭାସିତ ଲକ୍ଷ୍ମୀନୃସିଂହଦେବଙ୍କୁ ଦର୍ଶନ କଲେ । ପରେ ବ୍ରହ୍ମା ଦୂରରୁ ପ୍ରଣାମକରି ଧୀରେ ଧୀରେ ସମୀପକୁ ଯାଇ ହାତ ଯୋଡ଼ି ସ୍ତୁତି କଲେ । ହେ ଦେବଦେବେଶ, ଶଙ୍ଖଚକ୍ରଧର, ଅଚ୍ୟୁତ ନମସ୍କାର ସତ୍ୟଜ୍ଞାନାନନ୍ଦମୟ ନରସିଂହ, ନମସ୍କାର । ମୁଁ ଆପଣଙ୍କର ନାଭିକମଳରୁ ଚତୁର୍ମୁଖ ବ୍ରହ୍ମା ରୂପେ ଜନ୍ମଲାଭ କରିଅଛି । ହେ ଜଗନ୍ନାଥ, ମୁଁ ଆପଣଙ୍କ ଶକ୍ତି ବଳରେ କେବଳ ସମସ୍ତ ଜଗତ ସୃଷ୍ଟି କରିଅଛି । ଆପଣ ଦଶବିଧ ଅବତାର ଗ୍ରହଣ କରି ଜଗତର ରକ୍ଷା କରୁଅଛନ୍ତି । ପରିଶେଷରେ ରୁଦ୍ରରୂପଧାରଣ କରି ଜଗତ୍ ସଂହାର କରୁଅଛନ୍ତି । ଇନ୍ଦ୍ରାଦି ସମସ୍ତ ଦେବତାମାନେ ଆପଣଙ୍କର ଆଜ୍ଞାବର୍ତ୍ତୀ । ଆପଣ ହିଁ ସମସ୍ତ ଜଗତର କର୍ତ୍ତା, ପାଳକ ଓ ହର୍ତ୍ତା। ଆପଣ ମଧୁ-ନାମକ ରାକ୍ଷସକୁ ମାରିଅଛନ୍ତି । ବିରାଟ ମତ୍ସ୍ୟରୂପଧାରଣ କରି ସୋମକାସୁରକୁ ମାରି ବେଦ ଉଦ୍ଧାର କରି ମୋତେ ସମର୍ପଣ କରିଅଛନ୍ତି । ହେ କୈଟଭାରି, ଦେବ ଅସୁରମାନେ ଅମୃତ ପାଇବାଶେ ସମୁଦ୍ରରେ ମନ୍ଦରାଦ୍ରିକୁ ଦଣ୍ଡସ୍ୱରୂପ ନିକ୍ଷେପ କଲାବେଳେ ଆପଣ କୂର୍ମରୂପ ଧାରଣ କରି ପର୍ବତକୁ ନବୁଡ଼ିଲାପରି ଧାରଣ କରିଅଛନ୍ତି, ଆପଣ ଆଶ୍ରିତମାନଙ୍କର ପାପତାପ ହରଣ କରୁଅଛନ୍ତି. ଆପଣ କେବଳ ଯଜ୍ଞବରାହ ରୂପ ଧାରଣକରି ଦେବତାମାନଙ୍କୁ ବାଧା ଦେଉଥିବା ହିରଣାକ୍ଷନାମକ ଦୈତ୍ୟକୁ ମାରି ରସାତଳଗାମୀ ପୃଥିବୀକୁ ଉଦ୍ଧାର କରିଅଛନ୍ତି । ଆପଣ ଆଶ୍ରିତମାନଙ୍କର ବିରୋଧୀଙ୍କୁ ଧ୍ୱସ୍ତ କରୁଅଛନ୍ତି, ଆପଣ ନରସିଂହରୂପ ଧାରଣ କରି ଭକ୍ତଙ୍କର ରାକ୍ଷସ ହିରଣ୍ୟକଶିପୁଙ୍କୁ ତୀକ୍ଷ୍ଣ ନଖ-ଦ୍ୱାରା ବିଦାରିତ କରିଅଛନ୍ତି । କନ୍ଦୁକରେ କ୍ରୀଡ଼ା କଲାପରି ପ୍ରବଳ ପରାକ୍ରମୀ ରାକ୍ଷସମାନଙ୍କର ମସ୍ତକ ଖଣ୍ଡନ କରୁଅଛନ୍ତି । ଏହିପରି ପ୍ରତ୍ୟକ୍ଷୀକୃତ ସାମର୍ଥ୍ୟ ଆଉ କାହାର ଅଛି? କାହାରି ନାହିଁ ! ସ୍ୱାମିନ୍, ଆପଣଙ୍କର ଅନେକ ଅବତାର ମୁଁ ଦେଖିଅଛି । ସେ ସମସ୍ତରୁ କୌଣସିଟି ମଧ୍ୟ ନରସିଂହ ଅବତାରର ସମକକ୍ଷ

ହୋଇ ପାରିବେ ନାହିଁ । ନରସିଂହରୂପି ଆପଣଙ୍କ ସମ୍ମୁଖରେ ଶିବ ଓ ମୁଁ ଅବସ୍ଥାନ କରିବା ଅଶକ୍ୟ ବୋଧ ହେଉଅଛୁ । ନରସିଂହ ରୂପୀ ଆପଣଙ୍କର ଦୃଷ୍ଟିରେ ଦୈତ୍ୟମାନେ ବିଶ୍ଲେଷ୍ଟ ହୋଇ ଭସ୍ମହୋଇଯାଉ ଅଛନ୍ତି । ଏତାଦୃଶ ଆପଣଙ୍କର ନରସିଂହରୂପ ସହିତ ଆପଣଙ୍କର ଅନ୍ୟାନ୍ୟରୂପ କପରି ସମାନହେବ? ଆପଣ ଯେତେବେଳେ ହିରଣ୍ୟକଶିପୁକୁ ମାରିବାକୁ ଉଦ୍ୟତହେଲେ, ସେତେ-ବେଳେ ମୁଁ ଆପଣଙ୍କୁ କାଳାନଳ ସଦୃଶ ଦେଖିଥିଲି । ବର୍ତ୍ତମାନ ମଧ୍ୟ ସେହି ରୂପ ସ୍ମରଣମାତ୍ରେ ଜଳରେ ପ୍ରତିବିମ୍ବିତ ଚନ୍ଦ୍ର ପରି ମୋର ହୃଦୟ ହଲଚଳ ହୋଇ ଯାଉ ଅଛୁ । ଆପଣଙ୍କର କୃପାକଟାକ୍ଷର ପାତ୍ର ମୁଁ ପୃଥିବୀରେ ଆବିର୍ଭୂତ ଆପଣଙ୍କର ନରସିଂହରୂପମାନଙ୍କ ମଧ୍ୟରେ ସୌମ୍ୟରୂପ କେଉଁ କ୍ଷେତ୍ରରେ ଅଛି, ସେହି ଶାନ୍ତ ରୂପକୁ ସେବା କରିବାକୁ ଇଚ୍ଛୁଅଛୁ । ସ୍ୱୟମ୍ଭୂ ବ୍ରହ୍ମାଙ୍କର ପ୍ରାର୍ଥନା ଶୁଣି ନରସିଂହ ସ୍ୱାମୀ ସ୍ମିତ ପ୍ରକାଶ କରି ପ୍ରଣତ ବ୍ରହ୍ମାଙ୍କୁ କହିଲେ—ତୁମ୍ଭେ ଦେଇଥିବା ବର ବଳରେ ବଳୀୟାନ୍ ହିରଣ୍ୟକଶିପୁକୁ ମାରିବା ସକାଶେ ଭୂମ କରିବା ପ୍ରକାରେ ଏହି ଭୟଙ୍କର ରୂପ ଗ୍ରହଣକଲି । ଚତୁର୍ମୁଖ, ହିରଣ୍ୟ-କଶିପୁକୁମାରି ପ୍ରହ୍ଲାଦଙ୍କର ପୂଜା ପାଇ, ପ୍ରଶାନ୍ତ ରୂପ ଧାରଣ କରି ଲକ୍ଷ୍ମୀଙ୍କ ସହିତ ସିଂହାଚଳରେ ପୃଥ୍ୱୀରୂପ ଧାରଣ କରି ରହିଅଛୁ । ଚୈତ୍ର ଶୁକ୍ଳ ଏକାଦଶୀ ଦିନ ପ୍ରହ୍ଲାଦ ବିଶେଷ ଭାବେ ଆରାଧନା କରି ମହୋତ୍ସବ କରୁ ଅଛନ୍ତି । ବ୍ରହ୍ମନ୍ ଦେବ, ଋଷିମାନଙ୍କ ସହିତ ତୁମେ ବର୍ତ୍ତମାନ ସେଠାକୁ ଯାଇ ବିଧିପୂର୍ବକ ମୋର ମହୋତ୍ସବ କର । ଯେଉଁମାନେ ମହୋତ୍ସବରେ ଶ୍ରଦ୍ଧା ଭକ୍ତି ସହକାରେ ମୋର ପୂଜା କରନ୍ତି, ସେମାନେ ସମସ୍ତ ପାପ ନିର୍ମୁକ୍ତ ହୋଇ ମୋର ଅବ୍ୟୟ ପଦ ଲାଭ କରନ୍ତି । ହିରଣ୍ୟଗର୍ଭ, ଦେବ ଓ ମୁନୀନ୍ଦ୍ରଙ୍କ ସହିତ ମିଶି ତୁମ୍ଭେ ଶୀଘ୍ର ସେହି ସିଂହାଚଳକୁ ଯାଅ । ସେଠାରେ ତୁମେ ଓ ଦେବତାମାନେ ମୋର ଆଶ୍ଚର୍ଯ୍ୟ ରୂପ ଦର୍ଶନ କରିପାରିଲେ । ଏହି ପରି ବ୍ରହ୍ମାଙ୍କୁ କହି କର୍ମବନ୍ଧ, ଜନ୍ମବର୍ଜିତ ପରମେଶ୍ୱର ମୌନ ଅବଲମ୍ବନ କଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ସିଂହାଚଳ କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନଂ ନାମ ଷଡ଼ବିଂଶୋଽଧ୍ୟାୟଃ । ୨୬ ।



## ସପ୍ତବିଂଶ ଅଧ୍ୟାୟ

ଜୈମିନି—ଦ୍ୱିଜଗଣ, ଚତୁର୍ମୁଖ ବ୍ରହ୍ମା ଜଗତର କାରଣ ଭଗବାନଙ୍କର ପୂର୍ବୋକ୍ତ ଉପଦେଶ ଶ୍ରବଣ କରି ବାରମ୍ବାର ପ୍ରଣାମ କରି ସ୍ୱର୍ଗଲୋକକୁ ଆସିଲେ । ବ୍ରହ୍ମାଙ୍କୁ ଦେଖି ଇନ୍ଦ୍ରାଦିଦେବତାମାନେ ଉତ୍ଥାନ କରି ଯଥୋଚିତ ପୂଜା କଲେ, ସିଦ୍ଧ ଗନ୍ଧର୍ବ ପ୍ରଭୃତି ସ୍ତୁତି ଗାନ କଲେ । ବ୍ରହ୍ମା ସେମାନଙ୍କୁ ଲକ୍ଷ୍ୟ କରି କହିଲେ—ସିଦ୍ଧ ଗନ୍ଧର୍ବାଦି ସହିତ ସମସ୍ତ ଦେବତାମାନେ ମୋ ସହିତ ଆସନ୍ତୁ, ଆପଣମାନଙ୍କର ମଙ୍ଗଳହେତୁ । ଆମ୍ଭେମାନେ ସମସ୍ତେ ବର୍ତ୍ତମାନ ସିଂହାଚଳକୁ ଯାଇ ସେଠାରେ ଅବତୀର୍ଣ୍ଣ ଓ ପ୍ରହ୍ଲାଦଙ୍କ ଦ୍ୱାରା ପୂଜିତ ଶାନ୍ତ ସ୍ୱରୂପ ନରସିଂହଦେବଙ୍କୁ ପୂଜାକରି କୃତକୃତ୍ୟ ହେବା । ଏପରି କହି ଇନ୍ଦ୍ରପ୍ରମୁଖ ଦେବଗଣ, ବଶ୍ୟାତ୍ମା ଋଷି ମହର୍ଷିଙ୍କ ସହିତ ଚତୁର୍ମୁଖ ବ୍ରହ୍ମା ସ୍ୱର୍ଗରୁ ଭୂତଳରେ ଅବତରଣ କରି ସିଂହାଚଳ ଅଭିମୁଖେ ପ୍ରସ୍ଥାନ କଲେ । ମେଘସମାନ ନରସିଂହ ଦେବାଧିଷ୍ଠିତ, ସିଂହସମାକୃତି ସୁମନୋହର ସେହି ପର୍ବତକୁ ସ୍ୱର୍ଗରୁ ଦେଖିଲେ । ମେରୁଶୃଙ୍ଗ ସମାନ ଆକାଶବ୍ୟାପୀ ଶୃଙ୍ଗବିଶିଷ୍ଟ, ପୂର୍ବ ସମୁଦ୍ରର ଦୁଷ୍ପ୍ରବେଶ୍ୟ ଅନେକାଶ୍ଚର୍ଯ୍ୟ, ନାନାବିଧ ଜୀବଜନ୍ତୁ ସମାକୀର୍ଣ୍ଣ, ପ୍ରାକାରପରି-ବେଷ୍ଟିତ, ଶ୍ୱେତ ମାଣିକ୍ୟ ସମୁନ୍ନତ ସମସ୍ତଳ ମଧ୍ୟସ୍ଥଆଳୟ ପ୍ରଭାର ସମୂହରେ ବିଭୂଷିତ, ସର୍ବସମୃଦ୍ଧିଶାଳୀ ସୌଧବିଶିଷ୍ଟ, ଅଳକାପୁରୀ ସଦୃଶ୍ୟପୁର ବିଶିଷ୍ଟ ନାନାବିଧ ଫଳ ପୁଷ୍ପ ଭରିତ ତରୁପୁଞ୍ଜ ଉପବନମାନଙ୍କରେ ବିରାଜିତ, ପର୍ବତ ରାଜ ସିଂହାଚଳକୁ ଦୂରରୁ ଦେଖି ଆନନ୍ଦ ଓ ବିସ୍ମୟରେ ଅଭିଭୂତ ହେଲେ । ଏହାହିଁ ନରସିଂହ ଦେବଙ୍କର ପୀଠ ସ୍ଥାନ ସିଂହାଚଳ ! କି ଆଶ୍ଚର୍ଯ୍ୟ ! ଏହିପରି ପରସ୍ପର କଥାବାର୍ତ୍ତା କରି ଆଦର ସହକାରେ ସମୀପସ୍ଥ ହେଲେ । ପରେ ହର୍ଷୋତ୍ଫୁଲ୍ଲ ବ୍ରହ୍ମାଦି ଦେବତାମାନେ ପର୍ବତ ଶିଖରରେ ବିମାନମାନଙ୍କରୁ ଅବତରଣ କରି ଉପରି ଆଡ଼କୁ ଆରୋହଣ କଲେ । ପର୍ବତର ବିଶିଷ୍ଟ ସ୍ଥଳମାନ ଅତିକ୍ରମଣ କରି ବିସ୍ମୟାଭିଭୂତ ହୋଇ କୈଳାସ ଶିଖର ସଦୃଶ୍ୟ ମନ୍ଦିର ଦେଖିଲେ । ନକ୍ଷତ୍ରମାନଙ୍କୁ ସ୍ପର୍ଶ କରୁଥିବା ସମୁନ୍ନତ ଗୋପୁରବିଶିଷ୍ଟ, ସମୁନ୍ନତ ପତାକା ଓ ପୂର୍ଣ୍ଣକୁମ୍ଭରେ ଅଳଂକୃତ, ଚତୁଃପାର୍ଶ୍ୱରେ ପ୍ରାକାରପରିବେଷ୍ଟିତ ନାନାବିଧ ଉପବନର ରଚ, ଉପଯୁକ୍ତ ପବନ ଇତସ୍ତତଃ ସଞ୍ଚାର କରୁଥିବା, ହରି-ବୃକ୍ଷବର୍ଗରେ ସୁଶୋଭିତ, ଭେରି, ମର୍ଦ୍ଦଳ ପ୍ରଭୃତି ଚର୍ମାଚ୍ଛାଦିତ ବାଦ୍ୟ ଓ ଘଣ୍ଟା କାହାଳୀ ତୂର୍ଯ୍ୟ ପ୍ରଭୃତି ଧ୍ୱନିରେ ସଦା ମୁଖରିତ, ସୁଶ୍ରାବ୍ୟ ଘଣ୍ଟାଧ୍ୱନି,

ମନମୋହନ ବେଣୁନାଦ, ପ୍ରଭୃତିରେ ସର୍ବଦା ଶ୍ରୋତ୍ର ସୁଖପ୍ରଦ, ମେଘ ଗର୍ଜନ ସମାନ ଗମ୍ଭୀର ଜୟଭେରୀ ଧ୍ୱନିରେ ନିନାଦିତ, ଭୂଲୋକ ଓ ଦେବଲୋକ ବାରାଙ୍ଗନାମାନଙ୍କର ନୃତ୍ୟରେ ମନୋହର, ତପୋଧ୍ୟାନରତ ଭକ୍ତମାନଙ୍କର ସ୍ତୋତ୍ର ଶବ୍ଦରେ ଝଙ୍କୁର୍ତ୍ତିତ, ଭୃଗ୍ୱାଦି ମହର୍ଷିମାନଙ୍କଦ୍ୱାରା ସଦା ସେବିତ ଦେବାଳୟରେ ମଧ୍ୟାହ୍ନ ପୂଜା ସମୟରେ ଦେବତାମାନେ ପ୍ରବେଶ କଲେ । ସେ ସମୟରେ ପ୍ରହ୍ଲାଦ ନିଜେ ପୂଜା ଉପାସନା କଲାପରେ ନରସିଂହଦେବଙ୍କର ଦର୍ଶନାଫଳାକାଂକ୍ଷୀ ଦେବତାମାନଙ୍କର ଆଗମନ ଶୁଣି ବାହାରକୁ ଆସି ବ୍ରହ୍ମା, ଶିବ ଇନ୍ଦ୍ର ପ୍ରଭୃତିଙ୍କୁ ଦେଖି ପରମାନନ୍ଦ ଲାଭ କରି ଯଥାକ୍ରମେ ପ୍ରଣାମ କଲେ । ନରସିଂହ ଦେବଙ୍କୁ ଅର୍ପଣ କରିଥିବା ବସ୍ତ୍ର, ଚନ୍ଦନ, ମାଲ୍ୟାଦିଦ୍ୱାରା ସେହି ସେହି ଦେବତାମାନଙ୍କୁ ଉପଯୁକ୍ତ ପୂଜା କଲେ । ସମସ୍ତ ଦେବତାମାନେ ପ୍ରହ୍ଲାଦଙ୍କର ପୂଜାରେ ପରମ ସନ୍ତୋଷ ଲାଭ କଲେ । ବ୍ରହ୍ମା ଦେବତାମାନଙ୍କର ପୂଜା ଶେଷ କରି ବିନୟରେ ସମୀପାବର୍ତ୍ତିତ ପ୍ରହ୍ଲାଦଙ୍କୁ କହିଲେ ବତ୍ସ ପ୍ରହ୍ଲାଦ, ତୁମର ମଙ୍ଗଳ ହେଉ । ତୁମେ ପରମ ଭାଗବତ । ତୁମ ସକାଶେ ପ୍ରବଳ ପରାକ୍ରମ ନରସିଂହ ଦେବ ଏଠାରେ ଅବତୀର୍ଣ୍ଣ ହୋଇ ରହିଛନ୍ତି । ରାକ୍ଷସ କୁଳରେ ଜନ୍ମ ଲାଭ କଲେ ମଧ୍ୟ ତୁମେ ବିଶେଷ ଜ୍ଞାନ ଲାଭ କରି ଧନ୍ୟ ଓ କୃତାର୍ଥ ହୋଇଅଛ, ତୁମର ପିତାମାତା ମଧ୍ୟ ଧନ୍ୟ ହୋଇ ଅଛନ୍ତି । ନରସିଂହସ୍ୱାମୀଙ୍କଠାରେ ପ୍ରେମ ଓ ଭକ୍ତି କରି ତୁମର ସମସ୍ତ ପରିବାର ମଧ୍ୟ ଧନ୍ୟ ହୋଇ ଅଛନ୍ତି । ପୂଜା ସାମଗ୍ରୀ ଶୀଘ୍ର ସମ୍ପାଦନ କର । ମୁଁ ଶାନ୍ତ ସ୍ୱରୂପ ନରସିଂହ ଦେବଙ୍କୁ ପୂଜା କରିବି ।" ଜୈମିନି—ପ୍ରହ୍ଲାଦ ବ୍ରହ୍ମାଙ୍କର ବାକ୍ୟ ଶୁଣି ସମସ୍ତ ପୂଜା ସାମଗ୍ରୀ ଆଣି ଭକ୍ତିଭରେ ବ୍ରହ୍ମାଙ୍କୁ ସମର୍ପଣ କଲେ । ପ୍ରହ୍ଲାଦଙ୍କୁ ଆଗେ ରଖି ବ୍ରହ୍ମାଦି ଦେବତାମାନେ ଗର୍ଭ-ମନ୍ଦିରରେ ପ୍ରବେଶ କଲେ । ଗର୍ଭଗୃହ ଜାଜ୍ୱଲ୍ୟମାନ ମେରୁ ପର୍ବତ ଗୁହାପରି ସ୍ୱାମୀଙ୍କର ଆଭରଣ ଖଚିତ ମଣିମାନଙ୍କର କାନ୍ତିରେ ଓ ପ୍ରଦୀପ୍ତ ଦୀପମାନଙ୍କର ଆଲୋକରେ ଅନ୍ଧକାର ଶୂନ୍ୟ ହୋଇ ଶୋଭା ପାଉଥିଲା । ଦ୍ୱିଜଗଣ, ଦେବତାମାନେ ଭୂମିରୁ ଊର୍ଦ୍ଧ୍ୱଗାମୀ ହେଲେ ମଧ୍ୟ ନରସିଂହସ୍ୱାମୀ ପ୍ରସନ୍ନ ହୁଅ ବୋଲି କହି ଭୂମି ତଳେ ସାଷ୍ଟାଙ୍ଗ ପ୍ରଣାମ କଲେ । ଚତୁର୍ମୁଖ ବ୍ରହ୍ମ, ଶାନ୍ତ ସ୍ୱରୂପ ନରସିଂହ ସ୍ୱାମୀଙ୍କୁ ଦେଖି, ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହୋଇ, ଭୂମିତଳେ ପଡ଼ି ଦଣ୍ଡ ପ୍ରଣାମ କଲେ । ପରେ ବ୍ରହ୍ମା ପ୍ରହ୍ଲାଦଙ୍କଦ୍ୱାରା ଉପନୀତ ବିପୁଳ ପୂଜା ସାମଗ୍ରୀରେ, ଇନ୍ଦ୍ରଙ୍କଦ୍ୱାରା ସମାହୃତ ନନ୍ଦନବନ ପୁଷ୍ପରେ ଶାସ୍ତ୍ରନିର୍ଦ୍ଦେଶମତେ ଆବାହନାଦି ଷୋଡ଼ଶ ଉପଚାରରେ ପୂଜା କଲେ । ପରମ ଭକ୍ତି ସହକାରେ

ମହୋତ୍ସବ ମଧ୍ୟ କରାଇଲେ । ବ୍ରହ୍ମାଦିଙ୍କଦ୍ୱାରା ଅନୁଷ୍ଠିତ ସେହି ମହୋତ୍ସବରେ ଅପ୍‌ସରାମାନେ ନୃତ୍ୟ ଓ ଗନ୍ଧର୍ବମାନେ ଗାନ କଲେ । ପୂଜା ଶେଷରେ ବ୍ରହ୍ମା ପ୍ରଦକ୍ଷିଣ ନମସ୍କାର କରି ଦେବତାମାନଙ୍କ ସହିତ ଭକ୍ତିରେ ନରସିଂହସ୍ୱାମୀଙ୍କୁ ସ୍ତୁତି କଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁ ଖଣ୍ଡେ ସିଂହାଚଳ କ୍ଷେତ୍ର
ମାହାତ୍ମ୍ୟ ବର୍ଣ୍ଣନଂ ନାମ ସପ୍ତବିଂଶୋଽଧ୍ୟାୟଃ ।୨୭।

—o—

## ଅଷ୍ଟାବିଂଶ ଅଧ୍ୟାୟ

ବ୍ରହ୍ମା—ଜୟ ନରସିଂହ ଦେବ ଜୟ ଦୈତ୍ୟନାଶି,
ଜୟ ପ୍ରହ୍ଲାଦ ବରଦ, କୁନ୍ଦ କାନ୍ତିରାଶି ।
ଜୟ ତ୍ରିନେତ୍ର ପୂଜିତ ଜୟ ମୁରହର,
ଚରଣ ଯୁଗଳେ ଭୂମି କରନ୍ତି ବିସ୍ତାର ।
ଘନ ବିଦ୍ୟୁତରେ ଉଡ଼େ ତୁମ କେଶଜାଳ
ବିଶାଳବକ୍ଷରେ ଶୋଭେ ବୈଜୟନ୍ତୀମାଳ ।
ବିରାଜେ ମାଂସଳ ସ୍କନ୍ଧ, ଦୀର୍ଘ ବାହୁଯୁଗ,
ସୁବିଶାଳ ବକ୍ଷ ଦିଶେ ଅତ୍ୟନ୍ତ ସୁଭଗ ।
ମସ୍ତକରେ ଶୋଭେ ରତ୍ନ ଖଚିତ କିରୀଟ
କୁଣ୍ଡଳ ପ୍ରଭାରେ ଗଣ୍ଡ ଦିଶୁଛି ଉତ୍କଟ ।
କଣ୍ଠେ ଝଳଜଳ କଉସ୍ତୁଭ ମଣିହାର,
ବାହୁରେ ବଳୟ, କରେ କଙ୍କଣ ଭାସ୍ୱର ।
ଭୁଜକାନ୍ତି ଶୋଭେ ଭୁଜେ କଟିରେ ମେଖଳା
ସର୍ବାଙ୍ଗେ ଝଲସେ ବହୁ ମଣି ରତ୍ନମାଳା ।
ଜୟ ଭକ୍ତ ପରାଧୀନ, ଜୟ ସତ୍ୟସନ୍ଧ
ଜୟ ସତ୍ୟକାମ ସନାତନ ଅରିନ୍ଦମ ।
ଜୟ ସିଂହାଚଳାଧୀଶ ଦେବଦେବ ହରେ
କୋଟି କୋଟି ନମସ୍କାର ଶ୍ରୀ ଚରଣେ ତଳେ ।

ଜୈମିନି—ଚତୁର୍ମୁଖ ବ୍ରହ୍ମା ନିଜର ଚାରି ମୁଖରେ ଏହିପରି ସ୍ତୁତି କରି ବାରମ୍ବାର ପ୍ରଣାମ କରି ଅମିତ ଆନନ୍ଦରେ ଉଚ୍ଛ୍ୱସିତ ହୋଇ ମନ୍ଦିରରୁ ବାହାରକୁ ଆସିଲେ । ପରେ ତ୍ରିପୁରାରି ଶିବ, ଇନ୍ଦ୍ର, ବରୁଣ, ଆଦିତ୍ୟ, ବସୁ ଇତ୍ୟାଦି ଦେବଗଣ, ଋଷିଗଣ ପୃଥକ୍ ପୃଥକ୍ ଭାବେ ଷୋଡ଼ଶୋପଚାରରେ ନରସିଂହ ସ୍ୱାମୀଙ୍କର ପୂଜା ସମ୍ପାଦନ କଲେ । ପୂଜା ଶେଷରେ ବାହାରକୁ ଆସି ଅଙ୍ଗଣରେ ବସିଲେ ପୁଣି ସର୍ବଶେଷରେ ପ୍ରହ୍ଲାଦ ସିଂହସ୍ୱାମୀଙ୍କର ପୂଜା କଲେ । ପ୍ରାଙ୍ଗଣରେ ଉପବିଷ୍ଟ ବ୍ରହ୍ମାଦି ଦେବତାମାନଙ୍କୁ ପ୍ରହ୍ଲାଦ ନରସିଂହଦେବଙ୍କୁ ଅର୍ପଣ କରିଥିବା ଚବନ ପ୍ରସାଦ ଅର୍ପଣ କଲେ । ଦେବତାମାନେ ଯଜ୍ଞର ହବିର୍ଭାଗ ପରି ଯଥା ସମୟରେ ବିଭାଗ କରି ସେବା କଲେ । ନରସିଂହଦେବଙ୍କ ପ୍ରସାଦ ଅନ୍ୟାନ୍ୟ ଦେବତାମାନଙ୍କୁ ଅର୍ପଣ କଲେ ଅକ୍ଷୟ ଫଳ ମିଳେ ବୋଲି କଥିତ ଅଛି । ପିତୃଗଣଙ୍କୁ ମଧ୍ୟ ନରସିଂହଦେବଙ୍କ ପ୍ରସାଦ ଅର୍ପଣ କରିବା ଉଚିତ । ପିତୃ ଉଦ୍ଦେଶ୍ୟରେ ଅର୍ପିତ ନରସିଂହଦେବଙ୍କ ପ୍ରସାଦ ସ୍ୱଳ୍ପ ହେଲେ ମଧ୍ୟ ଅନନ୍ତ-ଫଳପ୍ରଦ ହୋଇଥାଏ । ବ୍ରାହ୍ମଣମାନେ ନରସିଂହଦେବଙ୍କର ପ୍ରସାଦରେ ହବ୍ୟ କବ୍ୟାଦି କଲେ ସର୍ବଦା ପିତୃଗଣ ଆଗକୁ ଦେଖୁଥାଆନ୍ତି । ଏ ହେତୁ ସମସ୍ତେ ସର୍ବଦା ନରସିଂହ ଦେବଙ୍କର ପ୍ରସାଦରେ ହବ୍ୟକବ୍ୟାଦି କରିବା ଅତ୍ୟନ୍ତ ପ୍ରଶସ୍ତ ବୋଲି ଜଣାଯାଏ । ବ୍ରହ୍ମା କେତେଦିନ ସେଠାରେ ରହି ନରସିଂହ ଦେବଙ୍କର ଉତ୍ସବମାନ ବିଧିମତେ କରାଇ ପ୍ରହ୍ଲାଦଙ୍କର ଅନୁଜ୍ଞା ନେଇ ସତ୍ୟ-ଲୋକକୁ ପ୍ରତ୍ୟାବର୍ତ୍ତନ କଲେ । ରମ୍ୟତର ସିଂହାଚଳ, ଗଙ୍ଗାଧାରା ଓ ଅଦ୍ଭୁତରୂପ ନରସିଂହସ୍ୱାମୀଙ୍କୁ ଦେଖି ତ୍ରିପୁରାରି ମହାଦେବ କୈଳାଶ ପାସୋରିଯାଇ ଏହି ଠାରେ ରହି ସେଠାରେ ସୁଲଭ ପୂଜୋପକରଣରେ ନିଜେ ଭକ୍ତି ସହକାରେ ନରସିଂହସ୍ୱାମୀଙ୍କୁ ପୂଜାକରି ସିଦ୍ଧଗନ୍ଧର୍ବାଦି ସେବିତ ସିଂହାଚଳରେ ଆଜିପର୍ଯ୍ୟନ୍ତ ଅଛନ୍ତି । ପରମଭାଗବତ ପ୍ରହ୍ଲାଦ ମଧ୍ୟ ବହୁକାଳ ପର୍ଯ୍ୟନ୍ତ ନରସିଂହ ଦେବଙ୍କର ପୂଜାକରି ଶରୀର ତ୍ୟାଗ ପରେ ନରସିଂହଦେବଙ୍କର କଟାକ୍ଷରେ ତାଙ୍କର ଦାସ୍ୟାଦିରୂପେ ଅବସ୍ଥାନ କରୁ ଅଛନ୍ତି । ଦ୍ୱିଜଗଣ, ପରମ ଭାଗବତ ପ୍ରହ୍ଲାଦ ହରି ଭକ୍ତମାନଙ୍କ ମଧ୍ୟରେ ପ୍ରଥମ ବୋଲି ପରମପଦ ପ୍ରାପ୍ତି ପରେ ମଧ୍ୟ ପ୍ରସିଦ୍ଧି ଲାଭ କରି ଅଛନ୍ତି । ଅନେକ ବର୍ଷ ପରେ କଳିଯୁଗର ପ୍ରବେଶରେ ଅଧର୍ମର ମାତ୍ରା ବଢ଼ିଗଲା । ମନୁଷ୍ୟମାନେ ଅଧର୍ମ କାର୍ଯ୍ୟରେ ଆସକ୍ତ ହୋଇ ନରସିଂହଦେବଙ୍କର ଆରାଧନା ଛାଡ଼ିଦେଲେ । କେତେକ ବ୍ୟାଧି-ଦୁର୍ଭିକ୍ଷ ପ୍ରଭୃତିରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ । କେତେକ ସିଂହାଚଳ ପରିତ୍ୟାଗ କରି

ଅନ୍ୟ ଦେଶକୁ ଚାଲିଗଲେ । ପରିଶେଷରେ ରମଣୀୟ ସେହି ସମସ୍ତ ନଗର ଜନ ସଞ୍ଚାର ରହିତ ହୋଇସର୍ପ ମୃଗାଦି ହିଂସ୍ର ଜନ୍ତୁମାନଙ୍କର ଆବାସ ସ୍ଥଳ ଭୟଙ୍କର ଅରଣ୍ୟରେ ପରିଣତ ହେଲା । ମନ୍ଦିର ମଣ୍ଡପ ପ୍ରଭୃତି ଶିଥିଳ ହୋଇଗଲା । ନରସିଂହସ୍ୱାମୀ ଅନ୍ତର୍ହିତ ହେଲା ପରି ବାଲ୍ମୀକାବୃତ ହୋଇ ରହିଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ଶ୍ରୀ ସିଂହାଚଳ କ୍ଷେତ୍ର ମାହାତ୍ମ୍ୟ
ବର୍ଣ୍ଣନଂ ନାମ ଅଷ୍ଟବିଂଶୋଽଧ୍ୟାୟଃ ।୨୮।

—୦—

## ଊନତ୍ରିଂଶ ଅଧ୍ୟାୟ

ଜୈମିନି—ପରେ ପୁଣି ସତ୍ୟଯୁଗ ପ୍ରବେଶରେ ଚନ୍ଦ୍ରବଂଶରେ ପୁରୂରବା ନାମରେ ଜଣେ ରାଜା ଚକ୍ରବର୍ତ୍ତୀ ହେଲେ । ସେ ପୂର୍ବଜନ୍ମରେ ଏକାଗ୍ରଚିତ୍ତରେ ବିଷ୍ଣୁଙ୍କୁ ଆରାଧନା କରି ଶ୍ରାବଣ ଦ୍ୱାଦଶୀଦିନ ଜନ୍ମଗ୍ରହଣ କରିଥିଲେ । ଦ୍ୱିଜଗଣ, ଧର୍ମ ପ୍ରବର୍ତ୍ତନାରେ ଅତୀବ ଆଗ୍ରହଶୀଳ ସେହି ଚକ୍ରବର୍ତ୍ତୀ ବ୍ରହ୍ମାଙ୍କୁ ଧ୍ୟାନ କରି, ଉଗ୍ର ତପସ୍ୟାରେ ବ୍ରହ୍ମାଙ୍କୁ ତୃପ୍ତକରି କାମଗାମୀ ବିମାନ ଓ ଜୟଶୀଳ ଧନୁ ଲାଭକରି ଅପ୍ରତିହତଭାବେ ସମସ୍ତ ଦିଗରେ ସଞ୍ଚାର କଲେ । ସେ ଏକ ସମୟରେ ଭ୍ରମଣ କରୁ କରୁ ସବୁବେଳେ ସମସ୍ତ ଋତୁ ଧର୍ମବିଶିଷ୍ଟ ଉପବନ ପରିବୃତ, ଗଙ୍ଗାନଦୀ ଲହରୀ-ସମ୍ପର୍କରେ ପରମଶୀତଳ, ମହାଦେବଙ୍କର ଆବାସସ୍ଥଳ କୈଳାସପର୍ବତ ଅବଲୋକନ କରି ଗଗନସ୍ପର୍ଶୀ ଶିଖରଦେଶରେ ବିମାନରୁ ଅବତରଣ କରି ଶଚୀରାଧାରୀ କନ୍ଦର୍ପ ଅପେକ୍ଷା ଅଧିକ ସୌନ୍ଦର୍ଯ୍ୟ ପ୍ରକାଶ କରି ଏକ ଶିଳା ଉପରେ ଉପବେଶନ କଲେ । ଉର୍ବଶୀ ମହାଦେବଙ୍କର ମନ୍ଦିରରୁ ଫେରିଲାବେଳେ ଶିଳା ଉପରେ ଉପବିଷ୍ଟ ସେହି ରାଜରାଜଙ୍କୁ ଦେଖିଲେ । ଦର୍ଶନ ମାତ୍ରେ ତାଙ୍କର ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇଗଲେ । ନୀଳୋତ୍ପଳନୟନା ଉର୍ବଶୀଙ୍କର ଅସାଧାରଣ ସୌନ୍ଦର୍ଯ୍ୟ ଦେଖି ରାଜା ମଧ୍ୟ କାମାବିଷ୍ଟ ହେଲେ । ପରସ୍ପର ଦର୍ଶନରେ ଉଭୟଙ୍କ ମଧ୍ୟରେ ଅଗାଧ ପ୍ରେମର ସଞ୍ଚାର ହେଲା । ଦମ୍ପତିରୂପେ ସେମାନେ ଅଖଣ୍ଡ ପ୍ରେମରେ ନିମଗ୍ନ ହେଲେ । ଏକାତ୍ମା ହୋଇ ସେଠାରେ କ୍ରୀଡ଼ା କଲେ । ଚନ୍ଦ୍ରାଲୋକରେ ଦ୍ୱିଗୁଣ ଧାବଲ୍ୟଯୁକ୍ତ କୈଳାସପର୍ବତରେ ଓ ସମୁଦ୍ରତଟବର୍ତ୍ତୀ ଉଦ୍ୟାନରେ ବହୁକାଳ କ୍ରୀଡ଼ାକରି ମଧ୍ୟ ଏକ କ୍ଷଣପରି ମନେ କଲେ । ପରେ ସେହି କାମଗାମୀ

ବିମାନରେ ଉର୍ବଶୀଙ୍କ ସହିତ ଆରୋହଣ କରି ଦକ୍ଷିଣାଭିମୁଖରେ ପ୍ରୟାଣ କଲେ । ମଳୟପର୍ବତ ଅଭିମୁଖରେ ଯାଇ ଯାଇ ପ୍ରବଳ ପ୍ରତାପୀ ରାଜା ମାର୍ଗ-ମଧ୍ୟରେ ଚତୁର୍ବିଂଶ ଧାର ବିଶିଷ୍ଟ ବିବିଧ ପକ୍ଷି ନାଦ ପ୍ରତିଧ୍ୱନିତ-ଉଦ୍ୟାନରାଜି ବିଶୋଭିତ, ବହୁବିଧ ପଶୁ, ମୃଗ; ପକ୍ଷ୍ୟାଦି ସମାକୀର୍ଣ୍ଣ, ତାଳ-ହିନ୍ତାଳ ପୂଗ, ପୁନ୍ନାଗ, ବକୁଳ, ଚମ୍ପକ, ଅଶୋକ, ଜମ୍ବୀରାଦି ଫଳ-ପୁଷ୍ପ ଭରିତ ବୃକ୍ଷରାଜିରେ ବିରାଜିତ କପିମାନଙ୍କର ନାନାବିଧ କ୍ରୀଡାସ୍ଥଳୀ, ସିଂହାଚଳ ଅବଲୋକନ କଲେ । ମାର୍ଗ ମଧ୍ୟରେ ଏହିଭଳି ରମଣୀୟ ପର୍ବତ ଦେଖି ବିଶେଷ କୁତୂହଳ ଲାଭକଲେ । ବହୁବିଧ ବୃକ୍ଷ ଲତାଦି ସମାକୀର୍ଣ୍ଣ ବହୁ ଶିଖରବିଶିଷ୍ଟ ଏହି ପର୍ବତ ଦ୍ୱିତୀୟ ବିନ୍ଧ୍ୟ ବୋଲି ପ୍ରତୀତ ହେଉଥିଲା । ଗୁହାଆଡ଼େ କ୍ରୀଡ଼ା କରୁଥିବା ସିଦ୍ଧ, କିନ୍ନର, କିଂପୁରୁଷଗଣମାନଙ୍କୁ ଦେଖିଲେ ଏହା ମନ୍ଦର ପର୍ବତ ବୋଲି ଭ୍ରମ ହେଉଥିଲା । ଚନ୍ଦନ ବୃକ୍ଷରାଜି ବିଜୃମ୍ଭିତ ଏହି ପର୍ବତ ମଳୟାଚଳର ସାଦୃଶ୍ୟ ଧାରଣ କରିଥିଲା । ବୃକ୍ଷାଗ୍ରମାନଙ୍କରେ ଶାଖା ଉପଶାଖାରେ ବସି କ୍ରୀଡା କରୁଥିବା ବାନରମାନଙ୍କୁ ଦେଖିଲେ ଏହା ଦ୍ୱିତୀୟ ଋଷ୍ୟମୂକ ପର୍ବତ ବୋଲି ମନେ ହେଉ-ଥିଲା । ଶୃଙ୍ଗାଗ୍ରରେ ଚନ୍ଦ୍ରଙ୍କୁ ସ୍ପର୍ଶ କରୁଥିବା ଏହି ପର୍ବତ ଚନ୍ଦ୍ରଗିରି ପରି ଶୋଭା ପାଉଥିଲା । ଏକ ସମୟରେ ପଶ୍ଚିମ ଭାଗରେ ଅସ୍ତୋନ୍ମୁଖ ରବିଙ୍କୁ ଦେଖିଲେ ଅସ୍ତା-ଚଳବୋଲି ଶଙ୍କା ଜାତହେଉଥିଲା । ନକ୍ଷତ୍ରସଙ୍କେତମାନ ଦେଖି ଏହା ମାନସୋ-ତ୍ତର ପର୍ବତ ବୋଲି ଭ୍ରମ ଜାତହେଉଥିଲା । ଶ୍ୟାମଳ ମେଘାବୃତ ଏହି ପର୍ବତ ନୀଳାଚଳ ସଦୃଶ୍ୟ ଦେଖାଯାଉଥିଲା । ଶରତ୍କାଳୀନ ମେଘବୃନ୍ଦ ସମାବୃତ ଏହି ପର୍ବତ ଶ୍ୱେତଗିରି ପରି ଦେଖାଯାଉଥିଲା । ସ୍କନ୍ଧ ପରି ପରିଦୃଶ୍ୟମାନ ଶୃଙ୍ଗ ବିଶିଷ୍ଟ ଏହି ପର୍ବତ ବୃଷଭାଚଳର ସାଦୃଶ୍ୟ ବହିଥିଲା । କେଶରି ସଦୃଶ୍ୟ-ଚତୁର୍ଦ୍ଦିଗବ୍ୟାପୀ ସମୁନ୍ନତ ଶିଖରମାଳା ବିଶିଷ୍ଟ ଏହି ପର୍ବତ ଦ୍ୱିତୀୟମେରୁପରି ପ୍ରତୀୟମାନ ହେଉ-ଥିଲା । ଦ୍ୱିଜଗଣ ସେହି ସିଂହାଚଳ ଉପରେ ବିମାନରେ ପ୍ରସ୍ଥାନ କରୁଥିବା ରାଜା ପୁରୂରବା ଲକ୍ଷ୍ୟକଲେ ବିମାନ ବାଧାପ୍ରାପ୍ତ ହେଲାପରି ଅଭିମୁଖକୁ ଏକପାଦ ମଧ୍ୟ ଅଗ୍ରସର ନହୋଇ ଧୀରେଧୀରେ ତଳକୁ ଅବତରଣ କରୁଅଛି । ରାଜା ବିମାନର ତାଦୃଶ୍ୟ ଗତି ଦେଖି ଶୋକ ଓ ହର୍ଷରେ ଅଭିଭୂତ ହୋଇ ଉର୍ବଶୀଙ୍କୁ କହିଲେ—"ପ୍ରିୟେ ମଳୟାଚଳ ପରି ପ୍ରତୀୟମାନ, ପୂର୍ବ ସମୁଦ୍ରରେ ଏକ ଭାଗରେ ପ୍ରବିଷ୍ଟ ବର୍ଷାଚଳ ସଦୃଶ୍ୟ, ବିବିଧ ବୃକ୍ଷଲତା ବିରାଜିତ, ନାନା ଧାତୁ ରଞ୍ଜିତ, ନାନାବିଧ ଶକୁନ୍ତନାଦ ମୁଖରିତ, ଚତୁର୍ଦ୍ଦିଗରେ ଧାର ପ୍ରବାହ ଓ ବହୁ-ବିଧ ଗୁହା ବିଶିଷ୍ଟ, ସମୁନ୍ନତ ଶିଖରମାନଙ୍କରେ ଅପୂର୍ବ ଶୋଭାରେ ମନ ଓ

ନେହର ତୃପ୍ତି ପ୍ରଦ, ବସନ୍ତ ଶୋଭାବାଦକ ପରମ ମନୋହର, ସିଂହାକୃତ ଏହି ପର୍ବତକୁ ଥରେ ଦେଖ । ଏହା କେଉଁ ପର୍ବତ ଭୂମିକୁ ଜଣାଉଅଛି କି ? ରମଣୀୟ ଶିଳାତଳ ବିଶିଷ୍ଟ ଏହି ପର୍ବତକୁ ନିର୍ନିମେଷ ଲୋଚନରେ ଦେଖିବାକୁ ଇଚ୍ଛା ହେଉଅଛି । ମୁଁ କଅଣ କରିବି କିଛି ସ୍ଥିର କରିପାରୁ ନାହିଁ । ମୋର ଏହି ସମାନ ଏକପାଦ ମଧ୍ୟ ଆଗକୁ ନଯାଇ ଧୀରେ ଧୀରେ ନମ୍ରଗାମୀ ହେଉଅଛି । ମୋର ଜୀବନ ଥିବାଯାଏଁ ଭୂମ ସନ୍ନିତ ଏହି ପର୍ବତରେ ବିହାର କରି ରହିବାକୁ ଇଚ୍ଛା କରୁଅଛି । ବିମାନ ପ୍ରବନ୍ଧ ହେଲେ ମଧ୍ୟ ମୋର ମନରେ ଭଳେ ହେଲେ ବଗ୍ଭର ନାହିଁ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ଶ୍ରୀ ସିଂହାଚଳ କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନଂ ନାମ ଊନତ୍ରିଂଶୋଽଧ୍ୟାୟଃ ।

—o—

## ତ୍ରିଂଶ ଅଧ୍ୟାୟ

ଜୈମିନି—ଉର୍ବଶୀ ରାଜାଙ୍କର ବଚନ ଶୁଣି ଚତୁର ବୃତ୍ତାନ୍ତ ମନେ ପକାଇ ଚତ୍ରନେତ୍ର ରାଜାଙ୍କୁ କହିଲେ—ଆର୍ଯ୍ୟପୁତ୍ର ! ଏହି ପର୍ବତ ସିଂହାଚଳ ନାମରେ ପ୍ରସିଦ୍ଧ । ଏହାକୁ ମୁଁ ଆଗରୁ ଦେଖିଅଛି । ଏହି ପର୍ବତରେ ବ୍ରହ୍ମାଦଙ୍କ ରକ୍ଷା ସକାଶେ ଦ୍ୱିଭୁଜ, କୁନ୍ଦପୁଷ୍ପକାନ୍ତିବିଶିଷ୍ଟ,ପୀତାମ୍ବରଧାରୀ, ଗରୁଡ଼ୋପରିଶୋଭ୍ୟମାନ-ହସ୍ତ, ନିର୍ଭର୍ତ୍ସିତ ଲଳିତାକାର ବିଶିଷ୍ଟ ବିଷ୍ଣୁ ନିଜେ ଅବତରଣ କରିଥିଲେ । ଏହି ନରସିଂହ ସ୍ୱାମୀ ଜନଶିରୋମଣି ପ୍ରହ୍ଲାଦ ଏବଂ ବ୍ରହ୍ମାଦି ଦେବତାମାନଙ୍କ ଦ୍ୱାରା ପୂର୍ବରେ ପୂଜିତ ହୋଇଥିଲେ । ସେହି ସ୍ୱାମୀ ବର୍ତ୍ତମାନ ଏହି ପର୍ବତରେ କୌଣସି ସ୍ଥାନରେ ଗୁପ୍ତଭାବେ ଅଛନ୍ତି । ମହାରାଜ, ଆପଣ ବର୍ତ୍ତମାନ ତାଙ୍କୁ ଖୋଜି ବାହାର କରି ପୂଜା କରନ୍ତୁ । ସମଧିକ କୀର୍ତ୍ତି, ଭୁକ୍ତି ଓ ମୁକ୍ତି ଅବଶ୍ୟ ପାଇବେ ।

ଜୈମିନି—ଦ୍ୱିଜଗଣ, ଉର୍ବଶୀଙ୍କର ବାକ୍ୟଶୁଣି ରାଜା ଉର୍ବଶୀଙ୍କସହିତ ଅବତରଣ କରି ପର୍ବତର ସମସ୍ତ ପ୍ରଦେଶ ବହୁ ସମୟ ପର୍ଯ୍ୟନ୍ତ ଖୋଜିବାକୁ ଲାଗିଲେ । ବୁଲି ବୁଲି ଶ୍ରାନ୍ତ ହୋଇ ଏକ ସ୍ଥାନରେ ଶୀତଳୋଦକ ପରିପୂର୍ଣ୍ଣ ମାଭ୍-ମୁଖରେ ପ୍ରବାହିତ ଗଙ୍ଗାଧାରକୁ ଦେଖିଲେ । ଶୀତଳୋଦକ, ଧୀରେ ଧୀରେ ସଘନ ପ୍ରବହମାନ ତରଙ୍ଗମାଳା ପରିବୃତ, ତୀରରେ ଉଦ୍ୟାନରାଜି ବିରାଜିତ, ଚକ୍ରବାକାଦିପକ୍ଷୀମାନଙ୍କର କ୍ରୀଡ଼ାସ୍ଥଳ, ଦର୍ଶନସ୍ପର୍ଶନ ସ୍ନାନାଦି ଦ୍ୱାରା ସମସ୍ତପାପ-

ତାଣ୍ଡ ଦ୍ୱାରକ ସେହି ଗଙ୍ଗାଧାରରେ ରାଜା ଉର୍ବଶୀ ସହିତ ସ୍ନାନ କରି ଆକାଶ ଗଙ୍ଗାରେ ସ୍ନାନ କଲାପରି ପରମ ସନ୍ତୋଷ ଲାଭ କଲେ । ଅମୃତ-ସମାନ ଜଳକ ପାନ କରି ରାଜା ମାର୍ଗଶ୍ରମ ଅପନୋଦନ କଲେ । ନରସିଂହ-ଦେବସ୍ୱାମୀଙ୍କୁ କେଉଁଠାରେ ଦେଖିବ ବୋଲି ବିଶେଷ ଚିନ୍ତିତ ହେଲେ । ହଠାତ୍ ହରିଙ୍କର ଦର୍ଶନ ଲାଭ କରିବା ସକାଶେ ଏକଉପାୟ ଉଦ୍ଭାବନ କଲେ । ପ୍ରିୟେ, ଉର୍ବଶି, ପୂର୍ବାଗ୍ର କୁଶମାନ ବିଛାଇ ସ୍ୱାମୀଦର୍ଶନ ନହେଲାପର୍ଯ୍ୟନ୍ତକଠୋର ହୋଇ ଆହାର ପରିତ୍ୟାଗ ପୂର୍ବକ ଅଧା ପଡ଼ିବ ।' ରାଜା ଏହିପରି କହି ସେଠାରେ ଏକ ରମଣୀୟ ପ୍ରଦେଶରେ ଏକ ଶିଳାତଳରେ କୁଶମାନ ପୂର୍ବାଗ୍ରକରି ବିଛାଇ ଉର୍ବଶୀଙ୍କ ସହ ଧ୍ୟାନମଗ୍ନ ହୋଇ ଶୟନ କଲେ । ଉର୍ବଶୀଙ୍କ କଥିତ ଦିବ୍ୟ ରୂପ ମନରେ ଧ୍ୟାନ କରି 'ପ୍ରଭୋ ଦୟାକର' ବୋଲି ପ୍ରାର୍ଥନା କରି କରି ତିନିଦିନ ଅତିବାହିତ କଲେ । ତୃତୀୟ ଦିନ ଅର୍ଦ୍ଧରାତ୍ରି ଅତୀତ ହେଲା ପରେ ନିଦ୍ରାତୁରହୋଇ ବିଶେଷ କଷ୍ଟ ସହ୍ୟକରି ନେତ୍ର ଈଷତ୍ ମୁଦ୍ରିତକରି ଶୋଇଲେ ରାଜା ସ୍ୱପ୍ନରେ ନରସିଂହ ସ୍ୱାମୀଙ୍କୁ ଦେଖିଲେ । କି ଆଶ୍ଚର୍ଯ୍ୟ ! କୋଟି ଚନ୍ଦ୍ରଙ୍କର କାନ୍ତିକି ଧିକ୍କାର କରୁଥିବାତେଜ, ସୌନ୍ଦର୍ଯ୍ୟର ଆଧାର ସ୍କନ୍ଧ, ମନ୍ଦସ୍ମିତ-ବିଭୂଷିତ ମୁଖ, ପାଖରେ ଗରୁଡଙ୍କୁ ଅମୃତପାନ କରାଉଥିବା ହସ୍ତ ବିଶିଷ୍ଟ ନର-ସିଂହସ୍ୱାମୀଙ୍କୁ ଦେଖି ଅମିତ ଆନନ୍ଦ ଲାଭ କଲେ । ପରେ ଆନନ୍ଦ ଓ ଭୟଦ୍ୱାରା ବିହ୍ୱଳ ଓ ଚକିତହେଲେ । ବ୍ରହ୍ମାଦିଙ୍କରବରଦାୟୀ ନରସିଂହଦେବ ନିଜଦର୍ଶନ ଉଦ୍ଦେଶ୍ୟରେ ଅମିତକଷ୍ଟ ଅନୁଭବ କରୁଥିବା ରାଜାଙ୍କୁ କହିଲେ— ରାଜସିଂହ ! ଶୋଇ ପଡ଼ିଛ କା କିଅଣ ? ଉଠ ଉଠ, ତୁମର ମଙ୍ଗଳ ହେଉ । ଦେବତା-ମାନଙ୍କୁ ମଧ୍ୟ ଧ୍ୟାନରେଅଲଭ୍ୟ ମୁଁ ତୁମ୍ଭଙ୍କୁ ଦେଖାଦେଲି । ରାଜନ୍ ! ତୁମଆଗରେ ଗୋଟିଏ ବିଳା ଦେଖାଯାଉଅଛି । ତାହାର ଭିତରେ ଥିବା ମୋତେ ପଞ୍ଚାମୃତ ଓ ଶୁଦ୍ଧ ଜଳରେ ଶୁଦ୍ଧଭାବେ ଅଭିଷେକ କର । ବସ୍ତ୍ର, ମାଲ୍ୟ, ଗନ୍ଧାଦିଦ୍ୱାରା ପୂଜା କର, ନୃତ୍ୟ, ଗୀତ, ବାଦ୍ୟ, ଧୂପ, ଦୀପାଦି ସମର୍ପଣ କର । ଶ୍ରଦ୍ଧାରେ ପ୍ରଣାମ କରି ମନୋହର ବିବିଧ ନୈବେଦ୍ୟ ନିବେଦନ କର । ପରମ ଆନନ୍ଦରେ ମୋତେ ଉଲ୍ଲୁପେ ଆରାଧନା କର, ସ୍ତୁତି କର, ପ୍ରଣାମ କର ପୁଣି ସୁଗନ୍ଧଯୁକ୍ତ ଚନ୍ଦନ ଆପାଦ ମସ୍ତକ ପର୍ଯ୍ୟନ୍ତ ଚଢ଼ାଅ । ମହାରାଜ, ପରେ ବସ୍ତ୍ର, ଅଳଙ୍କାର, ମାଲ୍ୟାଦିରେ ଅଳଂକୃତ କରି ପୂଜା କର । ମନୁଷ୍ୟମାନେ ସବୁ-ବେଳେ ଚନ୍ଦନାବୃତ ମୋତେ ସେବା କରନ୍ତୁ । ପ୍ରତିବର୍ଷ ଏହି ଦିନ ଚନ୍ଦନ ଚର୍ଚ୍ଚିତ ମୋର ଦିବ୍ୟମଙ୍ଗଳ ବିଗ୍ରହକୁ ସମସ୍ତ ଲୋକ ସେବା କରନ୍ତୁ ।

ମୁଁ ନିର୍ଣ୍ଣିତ କରିଥିବା ଏହି ଦିନ ଛଡ଼ା ଅନ୍ୟ ଏକ ଦିନ ଯେଉଁ ଲୋକ ନିଜ ଇଚ୍ଛାନୁଯାୟୀ ମୋର ଶରୀରରେ ଚନ୍ଦନ ଚଢ଼ାଏ, ତାର ବଂଶ ଧ୍ୱଂସ ହୁଏ । ତାକୁ ଦର୍ଶନ ଫଳ ମିଳେନାହିଁ । ମୋତେ ସେବା କରିବାକୁ ସେହି ସମୟରେ ଇଚ୍ଛାମତେ ଯେ କୌଣସି ଲୋକ ଚନ୍ଦନ ଲଗାଇଲା ପରେ ମହାନୈବେଦ୍ୟ ସମର୍ପଣ କରି ପୁଣି ଚନ୍ଦନ ସମର୍ପଣ କରିବେ । ରାଜାଙ୍କୁ ଏହିପରି କହି ନରସିଂହ ଦେବ ଅନ୍ତର୍ହିତ ହେଲେ ।

ଇତି ଶ୍ରୀ ସ୍କାନ୍ଦେ ମହାପୁରାଣେ ବଷ୍ଣୁ ଖଣ୍ଡେ ଶ୍ରୀ ସିଂହାଚଳ କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନଂ ନାମ ତ୍ରିଂଶୋଽଧ୍ୟାୟଃ ।

—୦—

## ଏକତ୍ରିଂଶ ଅଧ୍ୟାୟ

ଜୈମିନି—ଦ୍ୱିଜଗଣ ପରେ ରାଜା ଚେତା ପାଇ ତତ୍‌ପରରେ ଉଠି ପରମ ଆନନ୍ଦରେ ବିକଶିତ ନେତ୍ର ହୋଇ ଉର୍ବଶୀଙ୍କୁ କହିଲେ— ଦେବି, ତୁମେ କହିବା ପ୍ରକାରେ ସମସ୍ତ ଲକ୍ଷଣୋପେତ, ପୂର୍ଣ୍ଣଚନ୍ଦ୍ର ଙ୍କପରି କାନ୍ତିମାନ୍ ନରସିଂହ ସ୍ୱାମୀଙ୍କୁ ମୁଁ ଏହିକ୍ଷଣି ଦେଖିଲି । ପ୍ରଥମେ କ୍ଷୀରଧାରାରେ ବାଳାକୁ ଅଭିଷିକ୍ତ କରି ଢାଦବାଳା ବାହାରକରି ସ୍ୱାମୀଙ୍କୁ ଉଦ୍ଧାର କରି ପୂଜାକର ବୋଲି ସ୍ୱପ୍ନରେ ସ୍ୱାମୀ ଆଦେଶ ଦେଇଅଛନ୍ତି । ଏହି ବିଜନ ସ୍ଥାନରେ କ୍ଷୀର ପ୍ରଭୃତି ଦୁର୍ଲ୍ଲଭ । ଅନ୍ୟ ସ୍ଥାନକୁ ଯାଇ ଆଣିବା ବୋଇଲେ ବିଳମ୍ବ ଅଚଳ ହେଉଅଛୁ । ବର୍ତ୍ତମାନ କଅଣ କରିବାକୁ ହେବ—ବିଚାର କରି କହ ।' ଉର୍ବଶୀ କହିଲେ— ମହାରାଜ, ନରସିଂହ ସ୍ୱାମୀଙ୍କର ଦର୍ଶନ ପାଇ ଆପଣ ଧନ୍ୟ ହୋଇଅଛନ୍ତି । ଭଗବାନ ଯେଉଁ ନିର୍ଦ୍ଦେଶ ଦେଇଅଛନ୍ତି ତାହା ଅକ୍ଷରେ ଅକ୍ଷରେ ପାଳନ କରନ୍ତୁ । ଶୁଭକାର୍ଯ୍ୟ ଯଥାଶୀଘ୍ର କରିବା କଥା, ବିଳମ୍ବ କରିବା ଉଚିତ ନୁହେଁ । ଆପଣ ଚକ୍ରବର୍ତ୍ତୀ, ଆପଣଙ୍କର ଅସାଧ କଅଣଅଛି ? ଆପଣଙ୍କ ଦକ୍ଷିଣହସ୍ତରେବିଷ୍ଣୁଙ୍କର ଚିହ୍ନ ସର୍ବଦା ବିଦ୍ୟମାନ । ଏହେତୁ ଦେବତା, ମନୁଷ୍ୟ ପ୍ରଭୃତି ସମସ୍ତେଆପଣଙ୍କର ଆଜ୍ଞାବହ ରହିବେ । ଶୀଘ୍ର କାର୍ଯ୍ୟ କରନ୍ତୁ ।' ଦ୍ୱିଜଗଣ, ଉର୍ବଶୀଙ୍କର ବାକ୍ୟ ଶୁଣି ରାଜା ପରମାନନ୍ଦିତ ହୋଇ ଦେବତାଙ୍କୁ ପ୍ରାର୍ଥନା କରି ତାଙ୍କଠାରୁ ଅନେକ କ୍ଷୀରପୂର୍ଣ୍ଣ କଳସ ପାଇଲେ । ଦେବତାଙ୍କର ପ୍ରସାଦ ଗୋକ୍ଷୀର ନେଇ କରି, ସମସ୍ତ ନିତ୍ୟକର୍ମ ସାରି, ନିର୍ମଳ ଚିତ୍ତରେ ଉର୍ବଶୀଙ୍କ ସହିତ ସ୍ୱାମୀଙ୍କୁ ଅଭିଷେକ କରିବାକୁ ଆରମ୍ଭ କଲେ । ପ୍ରଥମେ କ୍ଷୀରଧାରାରେ ବାଳାକୁ ସିକ୍ତକରି

ମାଟି ବାହାର କଲାପରେ କୁନ୍ଦପୁଷ୍ପ ଓ ଚନ୍ଦ୍ରଙ୍କ କାନ୍ତି ପରି କାନ୍ତିବିଶିଷ୍ଟ, କେଶର-ମାଳା ବିରାଜିତ କଣ୍ଠ, ପୂର୍ଣ୍ଣଚନ୍ଦ୍ରମୁଖ, ଊର୍ଦ୍ଧ୍ୱକର୍ଣ୍ଣ, ବିଶାଳ ନେତ୍ର, ବରାହବକ୍ଷରେ ସୁଶୋଭମାନ, ଲଙ୍କୁଳ କୁଳଇ ସ୍କନ୍ଧ ପ୍ରଦେଶରେ ରହି ସମ୍ପଟସ୍ଥ ମହାକମଳ-ମୃଣାଳପରି ପରିଶୁଭ୍ର ବାହୁ ଯୁଗଳଧାରୀ, ବନମାଳା ବୈଜୟନ୍ତୀ ବିରାଜିତ, କଟିସୂତ୍ର ବିଭୂଷିତ, ବ୍ରହ୍ମାଣ୍ଡକର୍ତ୍ତା, ଚତୁର୍ମୁଖ ବ୍ରହ୍ମାଙ୍କର ଜନ୍ମସ୍ଥାନ ନାଭିକମଳରେ ସମ୍-ଭୂଷିତ ଉଦର ବିଶିଷ୍ଟ ଶ୍ରମକାତର ଗରୁଡଙ୍କ ଅମୃତ ପାନ କରାଉଥିବା, ଚନ୍ଦ୍ରସ୍ଥ କଟିବସ୍ତ୍ରକୁ ଦକ୍ଷିଣ ହସ୍ତରେ ଧରିଥିବା, ତ୍ରିଭଙ୍ଗିମ ବିଶିଷ୍ଟ, ସୁଲଳିତ, ପ୍ରଶାନ୍ତ, ପ୍ରିୟଦର୍ଶନ, ଶୁଭପ୍ରଦ ଜାନୁଜଙ୍ଘା ସମର୍ପିତ ଧରଣୀ ଉପରେ ବିନ୍ୟସ୍ତପାଦ, ରଜତ-ପର୍ବତ ପରି ପରିଦୃଶ୍ୟମାନ ସର୍ବେଶ୍ୱର ନରସିଂହ ସ୍ୱାମୀଙ୍କୁ ଦେଖି, ଶ୍ରୀପାଦପଦ୍ମ ଦେଖିବାକୁ ଉତ୍କଣ୍ଠିତ ହୋଇ କ୍ଷୀର ଧାରରେ ପୁନରପି ଅଭିଷିକ୍ତ କଲେ । ଏପରି କଲେ ମଧ୍ୟ ବ୍ରହ୍ମାଙ୍କଦ୍ୱାରା ଅର୍ଚ୍ଚନୀୟ ପାଦପଦ୍ମ ଦେଖାଗଲା ନାହିଁ । ରାଜା ଅତ୍ୟନ୍ତ ଚିନ୍ତିତ ହେଲେ । ଶ୍ରୀପାଦ ଦର୍ଶନ ହେଲାନାହିଁ ବୋଲି ଚିନ୍ତାମଗ୍ନ ରାଜାଙ୍କୁ ଆକାଶବାଣୀ ଶୁଣାଗଲା— ମହାରାଜ ଚିନ୍ତା କରନାହିଁ, ଭଗବାନଙ୍କର ପାଦପଦ୍ମ ଆପଣମାନଙ୍କୁ ଦୃଶ୍ୟ ହେବ ନାହିଁ । ହରିପାଦ ଦର୍ଶନ ମାତ୍ରରେ ତତ୍କ୍ଷଣାତ୍ ମୁକ୍ତି ଅବଶ୍ୟମ୍ଭାବୀ ବୋଲି ବିଶେଷ ଯତ୍ନ ସହକାରେ ଭୂମି ଭିତରେ ପାଦପଦ୍ମ ନିଗୂଢ଼ଭାବେ ଅବସ୍ଥିତ । ଅତଏବ ପଞ୍ଚାମୃତରେ ଅଭିଷେକ କରି ବିଧିମତେ ଆବାହନାଦି ଷୋଡ଼ଶୋପଚାରରେ ପୂଜା କରି । ଶ୍ରଦ୍ଧା ଭକ୍ତିସହକାରେ ନୈବେଦ୍ୟ ଅର୍ପଣ କର । ପରେ ପରିମଳଯୁକ୍ତ ଚନ୍ଦନ ପ୍ରସନ୍ନପୂର୍ବକ ସ୍ୱାମୀଙ୍କର ଶ୍ରୀଅଙ୍ଗରେ ଚଢ଼ାଅ । ବିଳମ୍ବ କରନାହିଁ । ମହାରାଜ, ଏହି ନରସିଂହସ୍ୱାମୀ ସବୁବେଳେ ସମସ୍ତଙ୍କର ଚକ୍ଷୁଗୋଚର ହେବେ ନାହିଁ । ଏନ୍ତ କେବଳ ଏକାଗ୍ର ଚିତ୍ତରେ ଧ୍ୟାନ କଲେ ଦୃଶ୍ୟ ହେବେ । ଏତହେତୁ ଚନ୍ଦନ ଲେପରେ ସମ୍ପୂର୍ଣ୍ଣରୂପେ ଆବୃତ ସ୍ୱାମୀଙ୍କୁ ସବୁବେଳେ ସମସ୍ତେ ପୂଜା କରିବେ । ଅଜର ପୁଣ୍ୟ ଦିବସରେ କେବଳ ଚନ୍ଦନ ବିରହିତ ନରସିଂହସ୍ୱାମୀଙ୍କୁ ପୂର୍ବ ଜନ୍ମରେ ପୁଣ୍ୟ କରିଥିବା ମନୁଷ୍ୟମାନେ ସେବା କରିବେ । ଅକ୍ଷୟତୃତୀୟା ଦିନ ଚନ୍ଦନ ବାହାର କରି ଦିଆଯାଇଥିବା ସ୍ୱାମୀଙ୍କୁ ଯେଉଁମାନେ ସେବା କରନ୍ତି ମହାରାଜ, ସେମାନେ ପରମ ପଦ ଲାଭ କରିବେ । ପଞ୍ଚାମୃତରେ ଅଭିଷିକ୍ତ ନରସିଂହସ୍ୱାମୀଙ୍କୁ ଯେଉଁମାନେ ସେବା କରିବେ, ସେମାନେ ଧନ୍ୟ, ସେମାନେ ମୋକ୍ଷ ଲାଭ କରିବେ ।" ଏହାପରି ଥରେ ପାଦପଦ୍ମ ଦର୍ଶନ ହେଲାନାହିଁ ବୋଲି ଦୁଃଖରେ

ବିସ୍ମୟଗ୍ରସ୍ତ ମହାରାଜାଙ୍କୁ ପ୍ରବୋଧଦେଇ ଦେବସମ୍ବନ୍ଧୀ ଆକାଶବାଣୀ ବିରତ ହେଲା । କି ଆଶ୍ଚର୍ଯ୍ୟ !

ଇତିଶ୍ରୀ ସ୍କାନ୍ଦେ ମହାପୁରାଣେ କୃଷ୍ଣ ଖଣ୍ଡେ ସିଂହାଚଳ କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନଂ ନାମ ଏକତ୍ରିଂଶୋଽଧ୍ୟାୟଃ । ୩୧ ।

—:o:—

## ଦ୍ୱାତ୍ରିଂଶ ଅଧ୍ୟାୟ

ଜୈମିନି—ହେ ଜନେ ! ରାଜା ଆକାଶ ବାଣୀ ହାରା ପ୍ରବୋଧିତ ହୋଇ ଶ୍ରୀପାଦପଦ୍ମ ଦର୍ଶନାଭିଳାଷ ତ୍ୟାଗ କରି, ନାନାପ୍ରକାର ପୂଜୋପକରଣସମ୍ପାଦନ କରି, ଉର୍ବଶୀଙ୍କ ସହିତ ଷୋଡ଼ଶୋପଚାରରେ ନରସିଂହସ୍ୱାମୀଙ୍କର ପୂଜା କଲେ । ଅସଂଖ୍ୟ କୁମ୍ଭରେ ସଞ୍ଚିତ ପଞ୍ଚାମୃତରେ ଦେବ ଦେବ ନରସିଂହ ସ୍ୱାମୀଙ୍କର ଅଭିଷେକ କରି ଭକ୍ତି ସହକାରେ ବିଧିମତେ ସହସ୍ର କୁମ୍ଭାଭିଷେକ କଲେ । ଶ୍ରୀଚନ୍ଦନ ଅଣାଇ ଚିକ୍କଣ ଚନ୍ଦନ ପେଡ଼ାରେ ଘୋରି କସ୍ତୁରୀ, କୁଙ୍କୁମ, କର୍ପୂର ପ୍ରଭୃତି ସୁବାସିତ ଦ୍ରବ୍ୟମାନ ମିଶାଇ ନିପୁଣ ଚର୍ଚ୍ଚକ ସ୍ୱାମୀଙ୍କର ସର୍ବାଙ୍ଗରେ ଲେପନ କଲେ । ଦିବ୍ୟ ବସ୍ତ୍ର, ଦିବ୍ୟମାଳା, ପ୍ରଦୀପମାଳା, ଦିବ୍ୟ ଧୂପ, ନୀରାଜନ ପ୍ରଭୃତି ସମର୍ପଣକରି ନିଜେ ଧାରଣ କରିଥିବା ଦିବ୍ୟ ଆଭରଣମାନଙ୍କରେସ୍ୱାମୀଙ୍କୁ ଅଳଂକୃତ କଲେ । ଏହିପରି ଭାବେ ବିଧିମତେ ନରସିଂହସ୍ୱାମୀଙ୍କର ପୂଜାକରି ନୈବେଦ୍ୟ ସକାଶେ କାମଧେନୁଙ୍କୁ ସ୍ମରଣ କଲେ । ରାଜା ସ୍ମରଣ କଲମାତ୍ରେ କାମଧେନୁ ଦେବଲୋକରୁ ଆସି ନାନାବିଧ ଅପୂର୍ବ ସୁବାସିତ ଚର୍ବ୍ୟ ଚୋଷ୍ୟ ପ୍ରଭୃତି ଚତୁର୍ବିଧ ଅନ୍ନ ସୃଷ୍ଟି କଲେ । ରାଜା ସେ ସମସ୍ତ ନରସିଂହସ୍ୱାମୀଙ୍କୁ ନିବେଦନ କଲେ । ଗନ୍ଧର୍ବ ଅପ୍ସରା ପ୍ରଭୃତି ନିଜେ ନିଜେ ଆସି ଗୀତନୃତ୍ୟାଦି ହାରା ନିଜ ନିଜ ସେବା ସମାପନ କଲେ । ତୁମ୍ବୁରୁ ବିଶ୍ୱାବସୁ ପ୍ରଭୃତି ଗାନ କଲେ । ଅପ୍ସରାମାନେ ନୃତ୍ୟ କଲେ, କିନ୍ନରାଦି ଦେବଗଣ ବୀଣା, ବେଣୁ, ମୃଦଙ୍ଗାଦି ବାଦ୍ୟ ବଜାଇଲେ । ସିଦ୍ଧଚାରଣାଦିମାନେ ସ୍ତୋତ୍ର ପାଠ କଲେ । ପୁରୂରବା ଏହିପରି ମହୋତ୍ସବ ସମାପନ କରି ମନ୍ଦିର ଆଳୟ, ମଣ୍ଡପ ପ୍ରଭୃତି ପୂର୍ବରେ ଯେଉଁ ଯେଉଁ ସ୍ଥାନରେ ଶୋଭାହୀନ ଶିଥିଳ ହୋଇଯାଇଥିଲା, ସେହି ସେହି ସ୍ଥାନରେ ସେ ସମସ୍ତ ପୂର୍ବପରି ମନୋହର ଭାବେ ଶିଳ୍ପୀମାନଙ୍କ ହାରା

ନିର୍ମିତ କରାଇଲେ । ଭୂମିକୁ ସମତଳ କଲେ । ବ୍ରାହ୍ମଣାଦି ଚତୁର୍ବିଧ ବର୍ଣ୍ଣ-ମାନଙ୍କର ନିବାସ ଯୋଗ୍ୟ ଆବାସମାନ କରାଇଲେ । ନରସିଂହ ଦେବଙ୍କର ପୂଜା-ନିମନ୍ତେ ବେଦପାରଙ୍ଗମ ବ୍ରାହ୍ମଣମାନଙ୍କୁ ନିଯୁକ୍ତ କଲେ । ସେମାନଙ୍କର ଜୀବନ-ଧାରଣ ନିମନ୍ତେ ଅନେକ ଶାସନ ଦାନକଲେ । ପୁରୂରବା ପୁରାଣ ନାଟ୍ୟକାର ଓ ସୁସ୍ଵର ଗାୟକମାନଙ୍କୁ, ନରସିଂହଦେବଙ୍କର ସେବା ନିମନ୍ତେ ସେହି ନଗରରେ ରଖାଇଲେ । ନରସିଂହସ୍ଵାମୀଙ୍କର ନାନାବିଧ ଉପଚାରର ଶ୍ରଦ୍ଧାଭକ୍ତି ସହକାରେ କରିବା ନିମନ୍ତେ ଉପଯୁକ୍ତ ଅନେକ ପରିଚାରକ ନିଯୁକ୍ତ କରି ସେମାନଙ୍କୁ ଅନେକ ଗ୍ରାମ ଦାନକଲେ । ନରସିଂହସ୍ଵାମୀଙ୍କର ନିତ୍ୟ ପୂଜା, ଧୂପଦୀପ, ନୈବେଦ୍ୟାଦି ନିମନ୍ତେ ସମୃଦ୍ଧିଶାଳୀ ଅନେକ ଗ୍ରାମ ଖଞ୍ଜିଲେ । ତ୍ରେତାଯୁଗର ଆରମ୍ଭ ଦିବସରେ ଚନ୍ଦନ ମହୋତ୍ସବର ବ୍ୟବସ୍ଥା କଲେ । ଅନ୍ୟାନ୍ୟ ମାସମାନଙ୍କରେ ମଧ୍ୟ ଯେଉଁ ସବୁ ମହୋତ୍ସବ କରିବାକୁ ହେବ, ତାର ବ୍ୟବସ୍ଥା କରିଦେଲେ । ପୁରୂରବା ସେଠାରେ ନାନାବିଧ ପୁଣ୍ୟକର୍ମମାନ ସମ୍ପାଦନ କରି ଚକ୍ରବର୍ତ୍ତି ରୂପେ ଏହି ପୃଥିବୀକୁ ଅନେକ ବର୍ଷ ପରିପାଳନ କରି ପରିଶେଷରେ ନରସିଂହ ଦେବ ସ୍ଵାମୀଙ୍କର ପ୍ରସାଦରେ ବିଷ୍ଣୁପଦ ଲାଭ କଲେ । ପରେ ତାଙ୍କ ବଂଶରରାଜା-ମାନେ ପୁରୂରବାଙ୍କ ପରି ଧର୍ମତତ୍ପର ହୋଇ ନରସିଂହ ସ୍ଵାମୀଙ୍କର ଆରାଧନା କରିବାକୁ ଲାଗିଲେ । ତା'ପରେ କଳିଯୁଗର ରାଜାମାନଙ୍କଦ୍ଵାରା ପୂଜିତ ହୋଇ ନରସିଂହସ୍ଵାମୀ କଳ୍ପାନ୍ତ ପର୍ଯ୍ୟନ୍ତ ସେହି ସ୍ଥାନରେ ନିଶ୍ଚିତରୂପେ ପୂଜା ପାଇବେ ।

ଦ୍ଵିଜଗଣ, ପ୍ରହ୍ଲାଦଙ୍କ ଚରିତ୍ରରେ ସଂଶ୍ଳିଷ୍ଟ ନରସିଂହ କ୍ଷେତ୍ର ମାହାତ୍ମ୍ୟ ସର୍ବପାପନାଶକ ବୋଲି ମୁଁ ଆପଣମାନଙ୍କୁ କହି ସାରିଛି । ଦ୍ଵିଜଗଣ ନରସିଂହସ୍ଵାମୀଙ୍କର ସମ୍ମୁଖରେ ଭକ୍ତିସହକାରେ ଯେଉଁ ଲୋକ ଏହି କ୍ଷେତ୍ର-ମାହାତ୍ମ୍ୟ ପଢ଼ିବ, ସେ ସର୍ବପାପରୁ ବିମୁକ୍ତ ହେବ । ସାଙ୍ଗ ବେଦପାରାୟଣ କଲେ ଯେଉଁ ଫଳ ମିଳିବ, ସେ ସମସ୍ତ ଫଳ ନରସିଂହ କ୍ଷେତ୍ର ମାହାତ୍ମ୍ୟ ଯତ୍ନ ପୂର୍ବକ ପଢ଼ିଲେ ପାଇପାରିବ । କୁରୁ ଶୈଳ, ପାପହର ସିଂହାଚଳ, ଅହୋବଳ କ୍ଷେତ୍ର-ମାନଙ୍କରେ ପରିଭ୍ରମଣ କରି ସେହି ସେହି ତୀର୍ଥମାନଙ୍କରେ ନରସିଂହ ସ୍ଵାମୀଙ୍କର ଦର୍ଶନ ଲାଭ କଲେ ଯେଉଁ ଫଳ ମିଳିବ, ସେ ସମସ୍ତ ଫଳ ନରସିଂହ କ୍ଷେତ୍ର-ମାହାତ୍ମ୍ୟ ଶୁଣିଲେ ପାଇ ପାରିବ । ଏହା ତିନିବାର ସତ୍ୟ ବୋଲି ମୁଁ ଆପଣ-ମାନଙ୍କୁ କହି ରଖୁଛି । ନରସିଂହଦେବଙ୍କର ମହୋତ୍ସବରେ ସ୍ଵାମୀଙ୍କର ଦର୍ଶନାର୍ଥ

ଆଗତ ଭକ୍ତମାନଙ୍କୁ ଯେଉଁମାନେ ଶ୍ରଦ୍ଧାରେ ଏହି କ୍ଷେତ୍ରମାହାତ୍ମ୍ୟ ଶୁଣାଇବେ, ସେମାନଙ୍କର ପୂର୍ବପୁରୁଷ, ପିତୃଗଣ, ମାତୃଗଣ, ପିତାମହଗଣ ପ୍ରଭୃତି ପରମତୃପ୍ତି ଲାଭ କରିବେ ଏବଂ ସେମାନେ ବିଷ୍ଣୁଙ୍କର ପରମପଦ ଲାଭ କରିବେ ।

ଇତିଶ୍ରୀ ସ୍କାନ୍ଦେ ମହାପୁରାଣେ ବିଷ୍ଣୁଖଣ୍ଡେ ଶ୍ରୀ ସିଂହାଚଳ କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନଂ ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ । ୩୨ ।

★ ସମାପ୍ତ ★





Aruna Power Press, Lalitanagar, Visakhapatnam.



ଶ୍ରୀ ଶ୍ରୀ ଶ୍ରୀ ସିଂହାଚଳ ବରାହ ଲକ୍ଷ୍ମୀନରସିଂହ ଦେବଙ୍କ ମନ୍ଦିର